ପ୍ରକାଶକ
ଅଭିରାମ ମହାପାତ୍ର
**ଗ୍ରନ୍ଥ ମନ୍ଦିର**
ବିନୋଦବିହାରୀ, କଟକ-୨
ଶାଖା: ମେନ୍ ରୋଡ୍, ବ୍ରହ୍ମପୁର-୧

ମୁଦ୍ରକ
ରାଜାରାମ ମହାପାତ୍ର
**ମହାପାତ୍ର ବ୍ରଦର୍ସ**
ସିଟି ପୋଷ୍ଟ ଅଫିସ୍ ରୋଡ୍, ବ୍ରହ୍ମପୁର-୨

ପ୍ରଥମ ମୁଦ୍ରଣ ୧୯୩୩
ପୁନର୍ମୁଦ୍ରଣ : ୧୯୮୩

ମୂଲ୍ୟ : ଟ ୯.୦୦

ଶ୍ରୀମତୀ କଲ୍ୟାଣୀ ଦେବୀ

କଲ୍ୟାଣୀୟାସୁ

କଲ୍ୟାଣୀ,

ସେଥର ବାରିପଦା ଆସି ପ୍ରଥମେ ତୁମର ମୁହଁରୁ ଶୁଣିବାକୁ ପାଇଲି ଯେ,ମୁଁ ସାହିତ୍ୟଚର୍ଚ୍ଚା କରେ; ସୁତରାଂ ତୁମ ସ୍କୁଲ ପ୍ରାଇଜ୍ ପାଇଁ ଗୋଟିଏ ନାଟକ ଲେଖିଦେବା ଦରକାର । ଏଥିପୂର୍ବରୁ ଏହିପରି କେତେ ବିବାଦ ଶୁଣିଛି—ହୁକୁମ ମଧ୍ୟ ପାଇଛି, ଯେଉଁ ହୁକୁମ ତାମିଲ କଲେ ପାରିଶ୍ରମିକ ମିଳନ୍ତା ନାହିଁ, କିନ୍ତୁ ଆର୍ଥିକ କ୍ଷତି ହୁଅନ୍ତା ଅଥବା ନିନ୍ଦା ଶୁଣିବାକୁ ପଡ଼ନ୍ତା । ସେପରି ହୁକୁମକୁ ମଧ୍ୟ କେତେଥର ଅଗ୍ରାହ୍ୟ କରିଛି । କାରଣ ସାହିତ୍ୟକୁ ସୁକ୍ତିବାକ୍ୟ ବୋଲି ମନେକରିବା ମୋହ ପକ୍ଷରେ ଅସହ୍ୟ—ସରସ୍ୱତୀଙ୍କର ମର୍ଯ୍ୟାଦା ବାରାଙ୍ଗନାର ମର୍ଯ୍ୟାଦା ସଙ୍ଗେ ସମାନ ନୁହେ । ଅବଶ୍ୟ ଧନ ଏବଂ କ୍ଷମତାର ଆଶ୍ରୟରୁ ସାହିତ୍ୟ ସମ୍ପୂର୍ଣ୍ଣରୂପେ ମୁକ୍ତ ହୋଇ ନପାରେ—ଅତୀତରେ ନ ଥିଲା, ଆଜି ମଧ୍ୟ ନୁହେଁ । କିନ୍ତୁ ସରସ୍ୱତୀଙ୍କର ଆସନ ଲକ୍ଷ୍ମୀଙ୍କର ଊର୍ଦ୍ଧ୍ୱରେ ନହେଲେହେଁ ଅନ୍ତତଃ ତାଙ୍କ ଆସନର ସମାନ ହେବା ତ ଉଚିତ; ନ ହେଲେ ଉଭୟଙ୍କ ଭିତରେ ଯେପରି ସମ୍ପର୍କ ସେଥିରେ ବିବାଦ ଜନ୍ମିବା ଅବଶ୍ୟମ୍ଭାବୀ । ମୋହର ମନେହୁଏ, ଅତୀତରୁ ଆରମ୍ଭ କରି ଧନ ଓ କ୍ଷମତା ସହିତ ସାହିତ୍ୟର ଆଜି ପର୍ଯ୍ୟନ୍ତ ଯେଉଁ ସମ୍ପର୍କ ରହି ଆସିଅଛି, ତାହା କେବଳ ପରସ୍ପର ସ୍ୱାଧୀନତାର ସମ୍ପର୍କ । ଉଭୟେହିଁ ପରସ୍ପରକୁ ଅନୁଗୃହୀତ କରିଆସିଅଛନ୍ତି, ଜଣେ ଅନ୍ୟ ଉପରେ ହୁକୁମ ଜାରି କରି ନାହିଁ ।

ଆଜି କିନ୍ତୁ ଗଣତନ୍ତ୍ର ଯୁଗରେ ଅଷ୍ଟାଦର ସେ ସମ୍ପର୍କ ବହୁ ପରିମାଣରେ ଶିଥିଳ ହୋଇପଡ଼ିଅଛି । ଜୀବନଟାକୁ ଧରିରଖିବାର ସମସ୍ୟା ଏତେଦୂର ଜଟିଳ ହୋଇଉଠିଛି ଯେ, ସମାଜରେ ବଞ୍ଚି ରହିବାକୁ ହେଲେ, ଲେଖକକୁ ତୁମର ବୋଝ ବହିବାକୁ ହେବ, ନର୍ଦ୍ଦମା ସଫା ରଖି ମଜୁରି ରୋଜଗାର କରିବାକୁ ପଡ଼ିବ, ସେଥି ସଙ୍ଗରେ ଗୋଟିଏ ଅପେ ଗୀତ ଗାଇ ତୁମ ମେଜାଜ ମଧ୍ୟ ଖୁସ୍ ରଖିବା ଦରକାର । ଅବଶ୍ୟ ତୁମ ବରାଦଟା ଏ ଧରଣର ନୁହେ— ତୁମର କେବଳ ପ୍ରାଇଜ୍ ପାଇବା ଆବଶ୍ୟକ ଏବଂ ସେହି ଉପଲକ୍ଷରେ ଲେଖକକୁ ପଦେଅପେ ପ୍ରଶଂସା ବାକ୍ୟ ମିଳିଗଲେ ଯଥେଷ୍ଟ । ଏ ଦୁଇଟିଯାକ ବ୍ୟବସ୍ଥା ହୋଇ ସରିଅଛି—ମୁଁ ନାଟକ ଲେଖି ପ୍ରଶଂସା ପାଇଛି ଏବଂ ତୁମ୍ଭେମାନେ ତାହା ମୁଖସ୍ଥ କରି ପ୍ରାଇଜ୍ ପାଇଅଛ,କିନ୍ତୁ ବର୍ତ୍ତମାନ ନାଟକଟି ତୁମକୁ ଉତ୍ସର୍ଗ କରିବାର କେତେଗୁଡ଼ିଏ ବିଶେଷ କାରଣ ଅଛି ।

ପ୍ରଥମ କାରଣ—ତୁମଠାରୁ ଅନୁରୋଧ ଶୁଣିବାବେଳେ ମୁଁ ଏହି ନାଟକର କଥାହିଁ ଭାବୁଥିଲି, ଯଦିବା ତୁମ୍ଭ ମାତୃଗର୍ଭକୁ ଆସିବାର ବହୁପୂର୍ବରୁ ଏହା ମୋହର ଗର୍ଭସ୍ଥ ହୋଇ ସାରିଥିଲା । କିନ୍ତୁ ଭୂପୃଷ୍ଠର ଆସ୍ୱାଦ ଦେଖିବାକୁ ଏହାକୁ ଦଶ ମାସ ନୁହେଁ, ଦଶ ବର୍ଷରୁ ଅଧିକ ସମୟ ଲାଗିଅଛି । ସୁତରାଂ ଏ ଦିଗରେ ଜଣେ ଲେଖକର ଶକ୍ତି ସାଧାରଣ ଜନନୀମାନଙ୍କ ଅପେକ୍ଷା ଯଥେଷ୍ଟ ବେଶୀ । ତୁମର ପରି ମାଇନର ଶ୍ରେଣୀରେ ପଢ଼ିବାବେଳେ ଅଶୋକଙ୍କର ଚରିତ, ବିଶେଷତଃ କଳିଙ୍ଗଯୁଦ୍ଧ ଓ ତାହାର ପରିଣାମ ଯେ ପୃଥିବୀର ଇତିହାସରେ ଗୋଟାଏ ଅଭୂତପୂର୍ବ ଅସାଧାରଣ ଘଟଣା, ତାହା ମୋହର କୈଶୋରଚିତ୍ତକୁ ଅତି ନିବିଡ଼ ଭାବରେ ସ୍ପର୍ଶ କରିଥିଲା; ତାହାପରେ କେତେ ରୂପ

କେତେ ଆକାର ଧରି ସର୍ବଶେଷରେ ଏହା ବର୍ତ୍ତମାନ ରୂପରେ ପଦାକୁ ଆସିଲା । ନାଟକର ସେ ଭୟ ଅଳ୍ପ ଥିଲେହେଁ, ପୁରୁଷ ବିଶେଷତଃ ଲେଖକଗର୍ଭରୁ ଯେ ମନୁଷ୍ୟ ଛଡ଼ା ନାନା ଜୀବଜନ୍ତୁ ଓ ଜଡ଼ଙ୍କର ଆବିର୍ଭାବ ହେବାର ଆଶଙ୍କା ଅଛି, ବେଶୀ ପଢ଼ିଲେ ତୁମେ ଏହା ଭଲରୂପେ ବୁଝି ପାରିବ । ସୁତରାଂ ଏହି ଦଶ ବର୍ଷ ପରେ ମଧ୍ୟ ସେ ଆଶଙ୍କା ଯେ ମୋହର ନାହିଁ, ତାହା ହୁଏ ତ ତୁମକୁ କହି ଭୁଲାଇ ଦେଇ ପାରେଁ କିନ୍ତୁ ନିଜକୁ ଓ ଅନ୍ୟ ପାଠକ-ସାଧାରଣଙ୍କୁ ଭୁଲାଇ ପାରିବି ନାହିଁ । ଅନେକ ସମୟରେ ହିଅଁ ଗଢ଼ିବାକୁ ଯାଇ ଆମେ ମନୁଷ୍ୟ ମଧ୍ୟ ଗଢ଼ି ପାରୁନାହିଁ । ମୋହର ଅବଶ୍ୟ ହିଅଁ ଗଢ଼ିବାର ଏତେ ବେଶି ଇଚ୍ଛାକାଙ୍କ୍ଷା ନାହିଁ, ହିଅଁହିଁ ମନୁଷ୍ୟକୁ ଗଢ଼ନ୍ତି ବୋଲି ଶୁଣାଯାଏ । କିନ୍ତୁ ମନୁଷ୍ୟ ଗଢ଼ିବାକୁ ଯାଇ ଏହା ଯଦି ମନୁଷ୍ୟର ଆଦିପୁରୁଷ ହୋଇପଡ଼େ, ତାହାହେଲେ ସ୍ୱର୍ଗତ ଡାରୁଇନ୍ ସାହେବଙ୍କୁ ନମସ୍କାର କରି ତୁଷ୍ଟ ରହିବା ଛଡ଼ା ଅନ୍ୟ ଉପାୟ ମୋହର ନାହିଁ ।

ତୁମକୁ ଉତ୍ସର୍ଗ କରିବାର ଦ୍ୱିତୀୟ କାରଣ—ଏହା ଗଳ୍ପ ନୁହେ ନାଟକ ଏବଂ ସେଥିପାଇଁ ଏଥିରେ ତୁମକୁ ଉତ୍ସାହ ଓ ଆନନ୍ଦ ଦେବାର ସରଞ୍ଜାମ ଅତି ଅଳ୍ପ । ଆଜି ମଧ୍ୟ ଏଥିରୁ ତୁମେ ଯାହା ବୁଝିବ, ତାହା ଅପେକ୍ଷା ନ ବୁଝିଲା ଜାଗାଗୁଡ଼ାକରେ ଲେଖକକୁ ତାରିଫ ଦେବ ସବୁଠାରୁ ବେଶୀ । କେଉଁ ଘଟନା ଅବାନ୍ତର, କେଉଁ ଚରିତ୍ର ଅବାସ୍ତବ, ଏ ସବୁ ବିଷୟରେ ନ କରି ଲେଖକ ସେଠାରେ ତୁମର ଅନଧିଗମ୍ୟ ବୋଲିହିଁ ସ୍ଥିର କରିବ । ସୁତରାଂ ମୋହର ତ୍ରୁଟିଗୁଡ଼ାକ ପାଇଁ ତୁମଠାରୁ ନିନ୍ଦା ବଦଳରେ ସ୍ତୁତି ଶୁଣିବି । ଅଶୋକ ତ କଳିଙ୍ଗଯୁଦ୍ଧ ପର୍ଯ୍ୟନ୍ତ ବୌଦ୍ଧ ହୋଇ ନ ଥିଲେ, ତେବେ ତାଙ୍କର ଝିଅ ସଂଘମିତ୍ରାଙ୍କର ଆରମ୍ଭରୁ ବୌଦ୍ଧ

ନାମ ରଖିବାକୁ ଗଲ କପରି ? ପିୟୂଦର୍ଶୀ, ଧର୍ମପାଳ ଓ ସଂଘମିତ୍ରା ପ୍ରଭୃତି ପାଳି ନାମଗୁଡ଼ାକ ବ୍ୟବହାର କଲ କାହିଁକି ? ଏବଂ ତାହା ହେଲେ ନାଟକଟିକୁ ପାଳି ଭାଷା କିମ୍ବା ବ୍ରାହ୍ମୀ ଅକ୍ଷରରେ ନ ଲେଖିଲ କାହିଁକି ? ପୁରୁଷ ଓ ନାରୀ ଭାଷା ମଧ୍ୟରେ ସଂସ୍କୃତ ଓ ପ୍ରାକୃତର ପାର୍ଥକ୍ୟ ନ ରଖିଲ କାହିଁକି ? ଦୁଇ ହଜାର ବର୍ଷ ପୂର୍ବେ ଯେଉଁ ଭାଷା ଏ ଦେଶରେ ପ୍ରଚଳିତ ଥିଲା, ତାକୁ ଛାଡି ଆଜି-କାଲିକା ଭାଷାରେ ଲେଖିଲ କାହିଁକି । 'ଅଶୋକ ଅବଦାନ'ରେ ତ ଅଛି, କୁନାଳ ଅନ୍ଧ ହୋଇ ଭିକ୍ଷୁବେଶରେ ରାଜଦ୍ୱାରରେ ବଂଶୀ ବାଦନ କଲେ, ମୁଁ ତାଙ୍କ ମୁହଁରେ ଗୀତଟାଏ ବୋଲାଇଲି କାହିଁକି ଏବଂ ପ୍ରଥମେ ଅଶୋକଙ୍କ ସାଥୀରେ ତାଙ୍କର ସାକ୍ଷାତ୍ ନ କରାଇ, ସଂଘମିତ୍ରାଙ୍କ ସାଥିରେ ବା କରାଇଲି କାହିଁକି ? ମହେନ୍ଦ୍ର କାହିଁ ରହିଲେ, କିନ୍ତୁ କୁନାଳଙ୍କ ସଙ୍ଗେ ସଂଘମିତ୍ରା ସିଂହଳ ଯାତ୍ରା କଲେ କପରି ? ସୁସୀମ ତ କଳିଙ୍ଗଯୁଦ୍ଧ ପରେ ମଧ୍ୟ ଜୀବିତ ଥିବାର କୌଣସି କୌଣସି ଗ୍ରନ୍ଥରେ ଉଲ୍ଲେଖ ଅଛି, ମୁଁ ତାଙ୍କର ଏତେ ଶୀଘ୍ର ହତ୍ୟା-ବିଧାନ କରାଇଦେଲି କାହିଁକି ? ନିଜ ଖୁସିରେ କେଉଁଠାରେ ଇତି-ହାସକୁ ମାନିଲି, କେଉଁଠାରେ ପୁରାଣକୁ ମାନିଲି, ଆଉ କେଉଁଠାରେ ଦୁଇଟାଯାକ ଅବଜ୍ଞା କଲି କାହିଁକି ?—ଇତ୍ୟାଦି ପ୍ରଶ୍ନ ତୁମେ ପଚାରିବାକୁ ଯିବ ନାହିଁ । କାରଣ ଏ ସବୁର ସହଜ ଉତ୍ତର ଅଛି—ମୁଁ କେବଳ ନାଟକ ଲେଖିଛି, ଇତିହାସ ନୁହେ କି ପୁରାଣ ନୁହେ ।

ତୃତୀୟ କାରଣ ହେଉଛି, ତୁମ୍ଭମାନଙ୍କଦ୍ୱାରା ଏହା ଅଭିନୀତ ହେବାର ଆଶଙ୍କା ଅଳ୍ପ । କାରଣ ନାଟକ ଲେଖକର ଯେଉଁ ଶିକ୍ଷା ଦରକାର, ତାହା ଲାଭ କରିବାର ସୁଯୋଗ ମତେ ମିଳି ନାହିଁ । ଅର୍ଥାତ୍ ରଙ୍ଗମଞ୍ଚ ସଙ୍ଗେ କେବଳ ଦର୍ଶକ ଭାବରେ ମୋହର ଯେଉଁକି ପରିଚୟ ହୋଇଛି—ତାହା ଭିତରର ସଜ୍ଜାକୌଶଳ,

ଅଭିନେତାମାନଙ୍କର ଭାବଭଙ୍ଗୀ, ନାଟକୀୟ ଘଟନାର ସମାବେଶ ଓ ଦୃଶ୍ୟକଳାର ରୁଚି ପ୍ରଭୃତି ନାଟକର ଯେଉଁ ଆବଶ୍ୟକୀୟ ଅଙ୍ଗ-ଗୁଡ଼ିକ ରଙ୍ଗମଞ୍ଚର ସାକ୍ଷାତ୍ ଅଭିଜ୍ଞତା ବ୍ୟତୀତ ସମ୍ଭବ ନୁହେଁ, ତାହାକୁ ମୋହ ପକ୍ଷରେ ନାନା ଧରଣର ନବୀନ ଓ ପ୍ରାଚୀନ ନାଟକର ଅଲୋଚନା କରି ଓ ଅଭିନୟ ଦେଖି ନିଜର ବିଚାର ଓ କଳ୍ପନା ସାହାଯ୍ୟରେ ସଜାଇବାହିଁ ସ୍ୱାଭାବିକ । ଅର୍ଥାତ୍ ଏ ଦିଗରେ ମୁଁ ମୁଖ ନ ଫିଟାଇ ଗୀତ ଗାଇବାକୁ ଚେଷ୍ଟା କରିଅଛି । ଅବଶ୍ୟ ନାଟକରେ ଅଭିନୟର ସ୍ୱଭୂମିକୁ ଯେପରି ମନେରଖିଚି, ଆମ୍ଭମାନଙ୍କ ରଙ୍ଗମଞ୍ଚକୁ ଦୃଶ୍ୟପଟର ମୋହ ଯେପରି ଆଚ୍ଛନ୍ନ କରିଛି ଏବଂ ଘଟନାପରମ୍ପରାର ଉତ୍ତେଜନା ଓ ଉଚ୍ଛ୍ୱାସ ଦେଖିବା ପାଇଁ ଆମ୍ଭମାନଙ୍କ ଦର୍ଶକମଣ୍ଡଳୀ ଯେପରି ଆଶାନ୍ୱିତ, ତାହା ମଧ୍ୟ ସମ୍ପୂର୍ଣ୍ଣ ଭୁଲି ନାହିଁ । ସୁତରାଂ ତୁମ୍ଭମାନଙ୍କଦ୍ୱାରା ନ ହେଲେହେଁ ଏହା ଯେ ସାଧାରଣ ରଙ୍ଗମଞ୍ଚରେ ଅଭିନୟ ପାଇଁ ଏକାବେଳେ ଅନୁପଯୁକ୍ତ, ଦେଶବିଦେଶରେ ଅଭିମତ ନାଟକର ରୀତି ଓ ପ୍ରଣାଳୀ ଦେଖି ଏ ଦିଗରେ ମୁଁ ସମ୍ପୂର୍ଣ୍ଣ ନିରାଶ ନୁହେଁ । ଅବଶ୍ୟ ଏ ସମ୍ପର୍କରେ ମୋହର ନିଜ ମତ ଅପେକ୍ଷା ରଙ୍ଗମଞ୍ଚର ବିଶେଷଜ୍ଞମାନଙ୍କର ମତ ବେଶୀ ମୂଲ୍ୟବାନ୍ । ରଙ୍ଗମଞ୍ଚ ଏ ଦେଶରେ ଏକାଧାରରେ ଦେବାଳୟ ଓ ବିଦ୍ୟାଳୟର ସ୍ଥାନ ଅଧିକାର କରିବାକୁ ଯଥେଷ୍ଟ ସମୟ ଅଛି ଏବଂ ଦେବାଳୟ ଓ ବିଦ୍ୟାଳୟର ଯାତ୍ରୀମାନଙ୍କ ସଂଖ୍ୟା ରଙ୍ଗାଳୟରେ ଦୈନନ୍ଦିନ ଆଶା କରିବାକୁ ହେଲେ ଯଥେଷ୍ଟ ଅର୍ଥ ଓ ସାମର୍ଥ୍ୟର ଆବଶ୍ୟକ । ସୁତରାଂ ବର୍ତ୍ତମାନ ନାଟକରେ କେଉଁଠାରେ ଯଦି ଅଳ୍ପ କହିବାର କଥା ବେଶୀ କୁହାଯାଇଚି ଅଥବା ବିପରୀତ ଦୋଷରେ ଦୁଷ୍ଟ ହୋଇପଡ଼ିଚି କିମ୍ବା କଥୋପକଥନର ଭାଷା ସୁରକ୍ଷିତ ହୋଇପାରି-

ନାହିଁ ଏବଂ ସୁଖପାଠ୍ୟ ନ ହୋଇ ପାଠକ ମନରେ ଅଯଥା ଅସ୍ୱସ୍ତି ଆଣି ଦେଇଛି, ତାହାର କାରଣ ରଙ୍ଗମଞ୍ଚର ସାକ୍ଷାତ୍ ଶିକ୍ଷା ମୁଁ ପାଇନାହିଁ, ଅଥଚ ନାଟକର ଅଭିନୟ ଦିଗଟାକୁ ସ୍ମରଣ ରଖିଛି ।

ଚତୁର୍ଥ କାରଣ—ନାଟକୀୟ ଚରିତ୍ରଗୁଡ଼ିକ ପୁରାଣ ଓ ଇତିହାସର ସୃଷ୍ଟି ନ ହୋଇ ଅନେକାଂଶରେ ମୋହର ନିଜ ସୃଷ୍ଟି ହୋଇପଡ଼ିଅଛି ଏବଂ ନିଜ ସୃଷ୍ଟିକୁ ପ୍ରାଧାନ୍ୟ ଦେବାକୁ ଯାଇ ଇତିହାସ ଓ ପୁରାଣକୁ ମୁଁ ଏପରି ନିଷ୍ଠୁର ଭାବରେ ଉପେକ୍ଷା କରିଅଛି ଯେ, ମୋହର ଚରିତ୍ରଗୁଡ଼ିକରେ କୌଣସି ଶିକ୍ଷାସୂଚନାର ଚରିତ୍ରାନୁରାଗୀ ଛାତ୍ର କିମ୍ବା ଶିକ୍ଷକଙ୍କର ମନଃପୂତ ହେବାର ଭରସା ଅଳ୍ପ । କାରଣ ବିଦ୍ୟାଳୟରେ କେବଳ ଆଦର୍ଶ ସହିତହିଁ ଛାତ୍ର-ମାନଙ୍କର ସମ୍ପର୍କ, ବାସ୍ତବ କ୍ଷେତ୍ରକୁ ଆସିବାକୁ ହେଲେ ଗୁରୁ ଓ ଅଭିଭାବକମାନଙ୍କର ଅନୁମତି ଆବଶ୍ୟକ । ମୁଁ କିନ୍ତୁ କାହାରି ଅନୁମତି ନ ନେଇ ଇତିହାସ ଓ ପୁରାଣର ଯେଉଁ ଚରିତ୍ରଗୁଡ଼ିକ ଆଦର୍ଶସ୍ଥାନୀୟ, ସେ ସବୁକୁ ସ୍ୱାଭାବିକ କରିବାକୁ ଯାଇଅଛି, କାରଣ ଆଦର୍ଶଟା ଆଜି ଯାହା କିଛି ହେଉନା କାହିଁକି ସବୁ ସମୟରେ ଅସ୍ୱାଭାବିକ—ଅଶୋକ ଯେ ଘୋର ସାମ୍ରାଜ୍ୟବାଦୀ, କଳିଙ୍ଗ ସମରରେ ଅବଲୀଳାକ୍ରମେ ସେ ଯେ ଲକ୍ଷ ଲକ୍ଷ ଲୋକ ମାରିପାରନ୍ତି ଏବଂ ନିଷ୍ଠୁରତାରେ ଭ୍ରାତୃହନ୍ତା ଓ ନାରୀହନ୍ତା ହୋଇପାରନ୍ତି, ତାଙ୍କ ଚରିତ୍ରର ଏ ଦିଗଟା 'ଦେବାନାଂ ପ୍ରିୟ ପ୍ରିୟଦର୍ଶୀ' ହେବାଠାରୁ କୌଣସି ଅଂଶରେ ହୀନ ନୁହେଁ—ତାଙ୍କର ଦେବୋପମ ଚରିତ୍ର ମନୁଷ୍ୟୋପମ ହେବାକୁ ମଧ୍ୟ ସମାନ ଭାବରେ ଦାବି କରେ ଏବଂ ଶେଷୋକ୍ତ ଦିଗଟାହିଁ ଅଶୋକଚରିତ୍ରକୁ ଅଧିକ ଉଜ୍ଜ୍ୱଳ ଓ ଅସାଧାରଣ କରିଅଛି ବୋଲି ମୋହର ବିଶ୍ୱାସ । ସୁତରାଂ ଏହି ଦିଗଟାକୁ ପରିସ୍ଫୁଟ କରି ନ ଥିଲେ ତାଙ୍କ ପ୍ରତି ଦାରୁଣ ଅବିଚାର କରାହୁଅନ୍ତା ।

ଅଶୋକଙ୍କ ପର ସଂଘମିତ୍ରାଙ୍କର ଚରିତ୍ରକୁ ମଧ୍ୟ ଆମ୍ଭମାନଙ୍କର ସଂସ୍କାରଗତ ଆଦର୍ଶରେ ଆଚ୍ଛନ୍ନ ନ ରଖି ସହଜ ପଥରେ ମୁଁ ମୂର୍ତ୍ତିଦାନ କରିଅଛି । ସେଥିପାଇଁ କୌଣସି ଚରିତ୍ର ତ୍ରୁଟିଶୂନ୍ୟ ହୋଇନାହିଁ । କଳିଙ୍ଗ ବିଜୟ ଅଶୋକଙ୍କ ପକ୍ଷରେ ଯେପରି ଗୋଟାଏ ପ୍ରଚଣ୍ଡ ତ୍ରୁଟି, ସଂଘମିତ୍ରାଙ୍କର ପ୍ରଣୟ ଅଭିନୟ ମଧ୍ୟ ସେହିପରି ଏକ ତ୍ରୁଟି; ଅଥଚ ଏ ତ୍ରୁଟିଗୁଡ଼ିକ ବିନା ସ୍ୱାଭାବିକ ମନୁଷ୍ୟର ସୃଷ୍ଟି ହୋଇ ପାରେ ନାହିଁ; ପୁରୁଷ ପକ୍ଷରେ ଯେପରି ନାରୀ ପକ୍ଷରେ ମଧ୍ୟ ସେହିପରି—ନିତାନ୍ତ ଆବଶ୍ୟକୀୟ ତ୍ରୁଟି । ଏପରି ତ୍ରୁଟି ପ୍ରଦର୍ଶନକୁ କେହି ଯଦି ଲେଖକର ତ୍ରୁଟି ବୋଲି ଜ୍ଞାନ କରନ୍ତି, ତେବେ ତାହାର ଯଥାସାଧ୍ୟ ଉତ୍ତର ଦେବାପାଇଁ ସେ ପ୍ରସ୍ତୁତ । କାରଣ ଗୋଟାଏ ଦିଗରୁ ସେ ସମ୍ପୂର୍ଣ୍ଣ ନିରାପଦ— ତାହାର ଅପରାଧ କ୍ଷମା ଅପାରଗତାରେ କ୍ରୁଦ୍ଧ ହୋଇ ଦଣ୍ଡବିଧାନ କରିବାକୁ ଅଶୋକ ଆଜି ଭାରତର ସମ୍ରାଟ୍ ନୁହନ୍ତି !

କିନ୍ତୁ ଦୁଇଟି ଜୀବ—ମୀହାରିକା ଓ ଗଣଭିକ୍ଷୁ, ଦୁହିଙ୍କର ଘର କେଉଁଠାରେ ? ଭାରତବର୍ଷରେ ତ ? ବେଶ୍ କଥା, ରାଜା ରାଜୁଡ଼ାଙ୍କର ଏହିପରି ଅନୁଗତ ସାଥି ସହଚର ହୁଏ ତ ଥାନ୍ତି, କିନ୍ତୁ ସେମାନଙ୍କୁ ରଙ୍ଗମଞ୍ଚ ଭିତରକୁ ଆଣିବାର କି ଦରକାର ଥିଲା, ଆଉ ତାଙ୍କ ଦ୍ୱାରା ଏପରି ଅଭିନୟ କରାଇବାର ଉଦ୍ଦେଶ୍ୟ କଣ ? ଭାରତ-ବର୍ଷର ପ୍ରାଚୀନ ରୀତି ସହିତ ସେମାନଙ୍କର ଗତିବିଧି ମିଳୁଛି କି ? ମୀହାରିକାଠାରେ ଭାରତୀୟ ନାରୀଚରିତ୍ରର ବୈଶିଷ୍ଟ୍ୟ କ୍ଷୁଣ୍ଣ ହୋଇ ନାହିଁ ତ ? ଭାରତୀୟ ପୁରୁଷ ନାରୀ ଏହିପରିଭାବେ କଥାବାର୍ତ୍ତା କରନ୍ତିକି ?

ଏ ସବୁ ପ୍ରଶ୍ନର ଉତ୍ତର ମୁଁ ବିଶଦ ଭାବରେ ଦେବାକୁ ଚିହ୍ନ ନାହିଁ । କେବଳ ଏତିକି କହି କ୍ଷାନ୍ତ ହେବି ଯେ, ଭାରତୀୟ ନାରୀ

ଗୋଟିଏ ସୃଷ୍ଟିଛଡ଼ା ବସ୍ତୁ ନୁହେଁ ଏବଂ ତାହା ଉପରେ ଆମେ ଯେଉଁ ଜବରଦସ୍ତି ବୈଶିଷ୍ଟ୍ୟ ଆରୋପ କରୁଁ, ବହୁ ପରିମାଣରେ ତାହା ପ୍ରତାରଣା—କାରଣ ଅନ୍ୟମାନଙ୍କ ଅପେକ୍ଷା ନିଜକୁହିଁ ମନୁଷ ବେଶୀ ପ୍ରତାରିତ କରିବାକୁ ସୁଖ ପାଏ, ତାହା ନ କଲେ ସେ ଆତ୍ମହତ୍ୟା କରିବ ।

ଆଜି ଗଣିଅଛି ଯେ ଭାରତର କେବଳ ଜଣେ ଆଦର୍ଶ ପୁରୁଷ ନୁହନ୍ତି, ଅନ୍ତିମାଧାରେ ସ୍ୱଦେଶୀ, ତାହା ଅସ୍ୱୀକାର କରିବାର ଅର୍ଥ ସମଗ୍ର ପୁରୁଷ ଜାତିକୁ ଅପମାନ କରିବା । କାରଣ ଭାରତୀୟ ପୁରୁଷ ଅନ୍ୟ କୌଣସି ଦିଗରେ ନ ହେଲେହେଁ, ଅନ୍ତତଃ ପ୍ରଣୟ ଅଭିସାରରେ ପୃଥିବୀର ଯେ କୌଣସି ଦେଶ ପୁରୁଷର ଯେ ପୂର୍ଣ୍ଣ ସମକକ୍ଷ, ଏହା ପ୍ରମାଣ କରିବାକୁ ଉଦାହରଣର ଅଭାବ ନାହିଁ ।

ତାହାପରେ ଜିଜ୍ଞାଚ୍ଛେଦରୂପେ ଗୋଟାଏ ବିରାଟ ଦଣ୍ଡ ଆସିଲା କୁଆଡ଼ୁ—ଦୀକ୍ଷାଗୁରୁ ଉପଗୁପ୍ତଙ୍କର ଦର୍ଶନ ନାହିଁ, ଅଥଚ ଗୋଟିଏ ବର୍ଷିର ଘଟଣାରେ ଅଶୋକଙ୍କର ଆମୂଳ ପରିବର୍ତ୍ତନ ଘଟିଲା କିପରି—ଇତ୍ୟାଦି ନାନା ରୁଚି ଓ ବୟସର ଅନୁଯାୟୀ ନାନା ପ୍ରଶ୍ନର ଉଦୟ ହୋଇପାରେ । ତାହାର ଉତ୍ତର ଏହି ଯେ ସୃଷ୍ଟିର ଆରମ୍ଭ ଦିନଠାରୁ ଆଜି ସୁଦ୍ଧା କୌଣସି ପ୍ରଶ୍ନର ଶେଷ ମୀମାଂସା ହୋଇ ନାହିଁ, ଯଦିବା ପ୍ରଶ୍ନର ଉତ୍ତର ଲେଖି ଶତ ଶତ ଛାତ୍ର ପ୍ରତିବର୍ଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଯାଉଅଛନ୍ତି ।

| | |
|---|---|
| ବାରିପଦା<br>୨୨ । ୮ । ୧୯୩୩ | ତୁମ୍ଭର<br>କାଳନ୍ଦୀଚରଣ ପାଣିଗ୍ରାହୀ |

# ପ୍ରଥମ ଅଙ୍କ

[ ଦୁଇ ହଜାର ବର୍ଷ ପୂର୍ବେ ପାଟଳୀପୁତ୍ର ରାଜପଥର ଦୃଶ୍ୟ । ଉଜ୍ଜୟିନୀରୁ ଆସି ପାଟଳୀପୁତ୍ରରେ ନୂଆ ରାଜଧାନୀ ଗଢ଼ାଯାଇଅଛି, ମୋଟେ ପାଞ୍ଚ ବର୍ଷ ହେଲା । ସେଥିପାଇଁ ବାଟ ପାଖର ଦେବଦାରୁ ଓ ଝାଉଁ ଗଛଗୁଡ଼ିକର ବୟସ ଚାରି ପାଞ୍ଚ ବର୍ଷରୁ ବେଶି ନୁହେଁ । ନିକଟରେ ଗୋଟିଏ ଛୋଟ କୁଡ଼ିଆ । ତାହା ନୂଆ କି ପୁରୁଣା ଜାଣିବାର ଉପାୟ ନାହିଁ । ମାଟି ନଡ଼ାର ଚାଳ ଖଣ୍ଡିଏ—ଯେ କୌଣସି ମୁହୂର୍ତ୍ତରେ ଭାଙ୍ଗିଯାଇ ଗଢ଼ା ହୋଇପାରେ—ପକା କୋଠା ପରି ଏକ ସମୟରେ ନୂଆ ଓ କେତେକ ବର୍ଷ ପରେ ପୁରୁଣା ହୁଏ ନାହିଁ । ସେହି ଚାଳ ଭିତରେ ସୁନାରି ବଣିଆ ସୋମନାଥ ଓ ତାହାର ବାର ତେର ବର୍ଷର ପୁଅଟି । ଦୁହିଙ୍କ ମଝିରେ ଗୋଟାଏ ନିଆଁ ଉମେଇ । ନଳ ଖଣ୍ଡେ ଧରି ପିଲାଟି ସେହି ଉମେଇ ଭିତରେ ଫୁଙ୍କ ଦେଉଚି, ଆଉ ତାହାର ବାପ ସୋମନାଥ ଚିମୁଟା ସାହାଯ୍ୟରେ ଖଣ୍ଡେ ରୁପା ତତାଇ ଆଣି ହାତୁଡ଼ିରେ ଠକ୍ ଠକ୍ କରୁଚି । ସ୍ୱଭାବସୁଲଭ ଚପଳତାରେ ବାଳକଟି ମଝିରେ ମଝିରେ ନଳରୁ ମୁହଁ କାଢ଼ି ଏଣେତେଣେ ଚାହୁଁଚି । ଆଖି ଦୁଇଟି ଉଜ୍ଜ୍ୱଳ ଅଥଚ କରୁଣ । କିନ୍ତୁ ପରକ୍ଷଣରେ ବାପର ନୀରବ ତାଡ଼ନାରେ ପୁଣି ନିଜ କାମରେ ମନ ଦେଉଚି । ସୋମନାଥର ବୟସ ଅନ୍ଦାଜ ୩୫ । ତାହାର ମୁଚ୍ଛ, ଗାଲପାଟୀ ସିନ୍ଦୂର କଳି ଓ ବଳିଷ୍ଠ ବାହୁରୁ ମନେହୁଏ, ଦରକାର ପଡ଼ିଲେ ସେ ଯୁଦ୍ଧ କରିପାରେ ଏବଂ ଆଗ ପଛ ନ ବିଚାରି ମଣିଷଟାଏ ମାରିଦେଇପାରେ । ସେଥିପାଇଁ ସେ ନିଜେ ମଧ୍ୟ ଭୟଶୂନ୍ୟ ନୁହେଁ—ମାରିବାକୁ ଯେପରି ସାହସ ଅଛି, ମରିବାକୁ

ମଧ୍ୟ ସେହିପରି ତାର ଭୟ—ହିଂସ୍ରଜନ୍ତୁଙ୍କ ପରି । ସାଧାରଣ ସୈନିକର ଯାହା ହୋଇଥାଏ—ପଳାତକ ଶତ୍ରୁ ପଛରେ ଯେପରି ଗୋଡ଼ାଇପାରେ, ନିଜ ପକ୍ଷକୁ ପୃଷ୍ଠଭଙ୍ଗ ଦେବାକୁ ହେଲେ ସଙ୍ଗୀମାନଙ୍କ ସହିତ ଦୌଡ଼ିବାରେ ସେହିପରି ପ୍ରତିଯୋଗିତା କରିପାରେ ।

ପଥର ଦୁଇ ଦିଗରୁ ପଥିକମାନଙ୍କର ଗତାୟାତ, ଅଥଚ କାହାରି ମୁହଁରେ କଥା ନାହିଁ । କେବଳ ପରସ୍ପର ଚାହିଁଚାହିଁ ଓ ଠରାଠରି ହୋଇ ଚାଲିଛନ୍ତି । ଦୁଇ ହଜାର ବର୍ଷ ପରେ ଆଜି ମଧ୍ୟ ଭାରତବର୍ଷର ଶିଳ୍ପ ଯେ ହିମାଳୟ ପରି ସ୍ଥାଣୁ, ତାହା ଏହି ସୁନାଖି ବସିଆ ଓ ତାହାର ନଳି ଚମୁଟା ପ୍ରଭୃତି ସରଞ୍ଜାମରୁ ସ୍ପଷ୍ଟ ଜଣାପଡ଼େ ଏବଂ ଭାରତବର୍ଷର ସାଧାରଣ ବେଶଭୂଷାର ପରିବର୍ତ୍ତନ ଯେ କଚ୍ଛପ ପରି ଶିଥିଳ, ତାହା ଏହି ପଥିକମାନଙ୍କୁ ଦେଖିଲେ ବୁଝାଯାଏ ।

ପଥର ଏକ ଦିଗରୁ କଳିଙ୍ଗ ରାଜଦୂତ ଧର୍ମ୍ମପାଳଙ୍କର ପ୍ରବେଶ । ବୌଦ୍ଧ ପରିବ୍ରାଜକ ପରି ମୁଣ୍ଡିତ ମସ୍ତକ ଓ ଦେହରେ ଲମ୍ବା ଗେରୁଆ ଆଲଖେଲ୍ଲା । ମୁହଁ ଓ ଆଖିରୁ ନିଷ୍ଠା ଏବଂ ଆମାୟିକତାର ପ୍ରମାଣ ମିଳୁଥିଲେହେଁ ଏଠାରେ ସେ ସମ୍ପୂର୍ଣ୍ଣ ଅପରିଚିତ ବୋଲି ନିଜକୁ ଜାଣନ୍ତି । ପଥଶ୍ରମର କ୍ଳାନ୍ତି ଓ ଅବସାଦରେ ତାଙ୍କର ସ୍ୱାଭାବିକ ଗତି ମନ୍ଦ ହୋଇ ପଡ଼ିଅଛି । ସମ୍ମୁଖରେ ସୋମନାଥକୁ ଦେଖି ସେ ଅଗ୍ରସର ହୋଇ ଆସିଲେ । ]

ଧର୍ମ୍ମପାଳ—(ଉତ୍ସୁକ ଭାବରେ) ରାଜନଅର ଆଉ କେତେ ବାଟ ?
(ସୋମନାଥ ଆଗ ପରି କାମରେ ଲାଗିଛି; କିନ୍ତୁ ତାର ପୁଅଟି ନଳି ଉପରୁ ମୁହଁ କାଢ଼ି ଅର୍ଥହୀନ ଦୃଷ୍ଟିରେ ଆଗନ୍ତୁକଙ୍କୁ ଚାହିଁଲା )

ଧର୍ମ୍ମପାଳ—(ବିସ୍ମିତ ହୋଇ) ଶୁଣି ପାରୁଚ ? ରାଜନଅର ଆଉ କେତେ—( କାମ ବନ୍ଦ ରଖି ସୋମନାଥ ଆଗନ୍ତୁକକୁ ଚାହିଁଲା । ତାଙ୍କ ଲକ୍ଷ୍ୟ ନ ହେଲେହେଁ ନିର୍ବିକାର ଭାବ—ଏପରି ଆଗନ୍ତୁକ

ସେ ଏଥିପୂର୍ବେ କେତେ ଥର ଦେଖିଛ । ପୁଣି ନିଜ କାମରେ ମନ ଦେଲା ।)

ଧର୍ମପାଳ—( ବିମୂଢ଼ ହୋଇ ଚାରିଆଡ଼କୁ ଚାହିଁଲେ ଏବଂ ଅନ୍ୟ ଉପାୟ ନ ଦେଖି ସୋମନାଥ ପାଖରେ ବସିପଡ଼ିଲେ ) ବଡ଼ କାବା କଥା ତ ! ଏ ରାଜ୍ୟ ଗୋଟାକ ସମସ୍ତେ—

ସୋମନାଥ—( ଅପରିଚିତର ଅନଧିକାରକୁ ଭ୍ରୂକ୍ଷେପ ନ କରି ଅଦ୍ଭୁତ ଦୃଷ୍ଟିରେ ) ତୁମ ରାଜ୍ୟ ?

ଧର୍ମପାଳ—(ଆଶ୍ୱସ୍ତ ହୋଇ ) କଳିଙ୍ଗରେ ମୋର ଜନ୍ମ ।

ସୋମନାଥ—(ନ ଶୁଣିବା ପରି ) କଳି··· ?

ଧର୍ମପାଳ—କଳିଙ୍ଗ ଜାଣ ନ ?—ପାଟଳୀପୁତ୍ରର ଦକ୍ଷିଣରେ—ମଗଧଠାରୁ ବଡ଼ ।

ସୋମନାଥ—(ଆଶ୍ଚର୍ଯ୍ୟ ହୋଇ) ସତେ ନା ? ମଗଧଠାରୁ ବଡ଼ ? ଆମରି ରାଜାଙ୍କ ଅଧିନରେ ତ ?

ଧର୍ମପାଳ—ନା, କଳିଙ୍ଗ ସ୍ୱାଧୀନ ରାଜ୍ୟ ।

ସୋମନାଥ—ସେଠାରେ ତେବେ ଆଉ ଜଣେ ରାଜା ଅଛନ୍ତି ? ମଗଧ ସାଥିରେ କେବେ ତାର ଯୁଦ୍ଧ ହୋଇନାହିଁ ? ତା' ନହେଲେ ଆମେ ଆଉ କେମିତି ଜାଣିବୁ ?

ଧର୍ମପାଳ—ତମେ ଯୁଦ୍ଧ କର ? କିନ୍ତୁ ତମ ବ୍ୟବସାୟରୁ ତ···

ସୋମନାଥ—ଯୁଦ୍ଧ ?—ଏ ରାଜ୍ୟରେ ଯୁଦ୍ଧ ନ କରେ କିଏ ? (ନିଜର ଦୁଇ ବାହୁକୁ ଚାହିଁ ) ତକ୍ଷଶିଳା ଜାଣ ? ସେ ଯୁଦ୍ଧ ଯେ ନ ଦେଖିଛ—

ଧର୍ମପାଳ—ତୁମେ ସେଠାକୁ ଯାଇଥିଲ ?

ସୋମନାଥ—(ପୌରୁଷ ଦେଖାଇ ) ଖାଲି ଯାଇଥିଲି କଣ ଦେଖିବାକୁ ? ତକ୍ଷଶିଳା ଜୟ କରିଛି କିଏ ?

ଧର୍ମପାଳ—(ସୁପାରିସ କରି ) ତୁମେ କରିଚ ତା ହେଲେ ?
ହଁ, ଅସମ୍ଭବ କଣ । ଜଣେ ଜଣେ ସୈନିକ ଅନେକ ସମୟରେ ଯୁଦ୍ଧ ଜୟ କରନ୍ତି; କିନ୍ତୁ ନାମ ନିଅନ୍ତି ସେନାପତି !

ସୋମନାଥ—(ପ୍ରସନ୍ନ ହୋଇ ) ଶୁଣିବ ତେବେ ? ଯୁଦ୍ଧପାଇଁ ଯେତେବେଳେ ଡକରା ଆସେ, ସେତେବେଳକୁ ମୋ ଘରେ ଜଣେ ବୋଲି ତିନି ମଣିଷ, ଆଉ ପାଞ୍ଚ କି ଛ' ବର୍ଷର ଏଇ ବୋଲି ପିଲା ପୁଅ (ପୁଅକୁ ଦେଖାଇ ); ଏ ଦି'ଟାଙ୍କୁ ଅଥାଡା କରି ଯୁଦ୍ଧମୁହଁକୁ କିଏ ଚିବାକୁ ମନ କରିବ କହିଲ ? ଯେତେ ବୁଝେଇଲେ ସେ ମାଇପି ଲୋକଟା କଣ ବୁଝିବ ? କାନ୍ଧ ବୋବେଇ ତିନି ଦିନ ଯାଏ ମତେ ଖଟ ଉପରେ ଲୁଚେଇ ରଖିଲା ।

ଧର୍ମପାଳ—(ହାସ୍ୟବୃଦ୍ଧି କରି ) ଖଟ ଉପରେ ?

ସୋମନାଥ—ହଁ ହେ, ଖାଲି ତା'ର କାନ୍ଦକୁ ଡରିକରି—ନ ହେଲେ ମୁଁ କିଏ, ଖଟ ଉପରେ କିଏ ? ତେବେ ରଜାଘର ଲୋକେ କଣ ସହଜରେ ଭୁଲିବେ ? କାହାର କଥା ନ ଶୁଣି ଖଟ ସନ୍ଧା ନେଇଗଲେ, ସେଗୁଡ଼ାକ କଣ ମଣିଷ !

ଧର୍ମପାଳ—(ସଂକ୍ଷିପ୍ତ କରିବା ଉଦ୍ଦେଶ୍ୟରେ ) ତାହା ପରେ ଚାଲକୁ ଓହ୍ଲାଇ ଆସିଲ ?

ସୋମନାଥ—ଖାଲି ଓହ୍ଲାଇ ଆସିଲି ସହଜରେ ? ବାହା ଫୁଟୁକ ମାରି ଯେତେବେଳେ ଡେଇଁଲି, ସେତେବେଳେ ଭୂଇଁ ଏକାତାନେ ଦଣହାତ ତଳକୁ ।

ଧର୍ମପାଳ—(କୌତୁକ ଦୃଷ୍ଟିରେ )ଆଉ ତମେ ?

ସୋମନାଥ—(ସାହସ ପାଇ ) ମୋର ସିନା ଗୋଡ଼ଟା ଖସିଗଲା, ନ ହେଲେ ତାଙ୍କର ଭିତରୁ ଜଣେ କାହାକୁ ଜଖମ କରି ନ ଥାନ୍ତି !

ଧର୍ମପାଳ—ଯାହା ହେଉ ତକ୍ଷଶିଳା ତ ଜୟ କରି ଫେରିଚ !

ସୋମନାଥ—ଜୟ କଲି ସିନା, ଫେରିବାକୁ କଣ ମନ ହେଉଥିଲା ? ଖାଲି ସେଇ ମାଇପିଟା ଯୋଗରୁ ।

ଧର୍ମପାଳ—ତକ୍ଷଶିଳା ବଡ଼ ଭଲ ଜାଗା, ନା ?

ସୋମନାଥ—ଭଲ ଜାଗା ? ତମ ଦେଶରେ ପାକଲା କେନ୍ଦୁ ଅଛି ନା ?

ଧର୍ମପାଳ—କେନ୍ଦୁ

ସୋମନାଥ—ହଁ ହେ କେନ୍ଦୁ । କେନ୍ଦୁ ନ ଥିଲେ କେ ସେଠାକୁ ଯୁଦ୍ଧ କରିବାକୁ ଯିବ କିଏ ? ତକ୍ଷଶିଳାର କେନ୍ଦୁ ଦେଖିଚ ? ( ହାତ ଦେଖାଇ ) ଏଉଁ ବଡ଼ ବଡ଼ । ଗୋଟିଏ ବୋଲି ମଞ୍ଜି ନାହିଁ କି ଟିକିଏ ବୋଲି ଚୋପା ନାହିଁ । ଗୋଟିଏ ଶରକୁ ଗୋଟିଏ କେନ୍ଦୁ । ବାସ୍, କେତେ ଖାଇବ ଖାଉଥା ।

ଧର୍ମପାଳ—ତମେ କଣ ସେଠାରେ ଶର ମାରି କେନ୍ଦୁ ପାଉଥିଲ ?

ସୋମନାଥ—ଶର ମାରି ଗଛରୁ କେନ୍ଦୁ ଯେମିତି ପାରିଛି, ମଣିଷ କାନ୍ଧରୁ ମୁଣ୍ଡ ସେମିତି ଛୁଣ୍ଡାଇଛି । ପଚ୍ଛରିଲ, ଯେତେ ଲୋକ ମୋ ସାଥିରେ ଯାଇଥିଲେ । ଆଉ କିଛି ନ କହନ୍ତୁ, ମୋ' ଠାରୁ ଯେତେ କେନ୍ଦୁ ଖାଇଛନ୍ତି, କହିବେ ନାହିଁ ? ନ ହେଲେ ଶୋଷରେ ଯେମିତି ତଣ୍ଟି ଶୁଖିଯାଏ ।

ଧର୍ମପାଳ—କେନ୍ଦୁ ପାରି ସମସ୍ତଙ୍କୁ ତେବେ ବାଣ୍ଟିଚ ?

ସୋମନାଥ—ମୋହର ବାଣ୍ଟିବା ଯାଏ ପୁଣି ସହାର କରିବ କିଏ—ସମସ୍ତେ ଆସି ହାତ ପୂରାଇ ମୁଣା ଖାଲି କରିଦେବେ ନାହିଁ !

ଧର୍ମପାଳ—କିନ୍ତୁ ଏତେ କରି ପୁରସ୍କାର ମିଳିଲା କଣ ?

ସେମନାଥ—ପୁରସ୍କାର ? ଘରକେ କେତେ କେଖାଁ ଗିବେ ଯୁଦ୍ଧକୁ,

ସେଥିରେ ପୁଣି ପୁରସ୍କାର ! ଆଚ୍ଛା, ତୁମ ଦେଶର ନାଁ କଣଟି—କେଉଁ ଲିଙ୍ଗ ?

ଧମ୍ମପାଳ—କଳିଙ୍ଗ ।

ସୋମନାଥ—ହଁ ହଁ, କଳିଙ୍ଗ । ( ଅନୁନୟ ସ୍ୱରରେ ) ସତକରି କହିବ ତ ଭାଇ, କଳିଙ୍ଗ ସାଥିରେ ତ ଆମର ଯୁଦ୍ଧ-ଫୁଦ୍ଧ କିଛି ନାହିଁ ?

ଧମ୍ମପାଳ—( ମୃଦୁ ହସି ) ଉଠୁଚ କାହିଁକି ? କଳିଙ୍ଗରେ ବହୁତ ପାଗଲ କେନ୍ଦୁ ଅଛି ।

ସୋମନାଥ—କେନ୍ଦୁ କଣ ଖିଆ ହୋଇ ନାହିଁ ? ଯୁଦ୍ଧକଥା କଣ କହିଲ ? ତୁମେ ତ ବାକି ଯୁଦ୍ଧ ଖବର ଦେବାକୁ ଆସିନ ? ତମେ ଏଠାରୁ ଯିବଟି, ନ ହେଲେ ମୁଁ ( ସନ୍ଦେହ ଦୃଷ୍ଟିରେ ଧମ୍ମପାଳକୁ ଚାହିଁ ନିଜର ସରଞ୍ଜାମ ଗୋଟାଇ ଉଠି ପଳାଇବାକୁ ବାହାରିଲ )—

ଧମ୍ମପାଳ—(ବିସ୍ମିତ ସ୍ୱରରେ) ପାଗଲ ହେଲ ? ଯୁଦ୍ଧ ଖବର ଦେବାକୁ ଏମିତି ବେଶରେ କିଏ ଆସେ ? ବସ, ବସ, ଉଠୁଚ କାହିଁକି ?

ସୋମନାଥ—( ଆଶ୍ୱସ୍ତ ହୋଇ ) ନାହିଁ, ନାହିଁ, ତମେ ଆଗ ଉଠିବଟି—ଜଣାନାହିଁ, ଶୁଣାନାହିଁ,—କାହିଁକି ? ଯୁଦ୍ଧ ତ ବଡ଼ କଥା—ଆମର ଏଠାରେ ଗଛ ବୃଛ ବି, କାହା ଘରେ ସୋରିଷ ଫୁଟିଲେ ଯାଇ ମହାରାଜାଙ୍କ କାନରେ କହିବେ । ଜାଣ ? ଏଇ ଇଟା ପଥରଙ୍କର ବି କାନ ଅଛି । ନା, ନା, ତମେ ବାହାର; ନ ହେଲେ ମୁଁ ଘର ଭିତରକୁ ଯାଏଁ— (ପୁଅକୁ) ଭୁଲ୍‌ରେ ନଟ !

ଧର୍ମପାଳ--ବସ, ବସ, କିନ୍ତୁ ପ୍ରଜାଙ୍କ କାନ ଏମିତି ବଧିର କାହିଁକି, ଭଲ ? ଖାଲି ବାଟଟା ଟିକିଏ ବତେଇ ଦେବାକୁ ପଚାରିଲେ କାହାରି ମୁହଁରେ କଥା ନାହିଁ ! ତୁମକୁ ମଧ୍ୟ ଯେତେବେଳେ ପଚାରିଲି, ସେଇ କଥା । ଏ ଦେଶ ଗୋଟାକ ସମସ୍ତେ କାଲ ନା କଣ ?

ସୋମନାଥ—(ପ୍ରଥମେ ଚମକି ପଡ଼ି ଓ ପରେ ଚାରିଆଡ଼କୁ ଭୟରେ ଚାହିଁ) ଆସ୍ତେ—ଆସ୍ତେ—କାଲ ନୁହନ୍ତି, ମୂକ ।

ଧର୍ମପାଳ--(ବିସ୍ମିତ ହୋଇ) ମୂକ ?

ସୋମନାଥ—( ପୂର୍ବପରି ନମ୍ର ସ୍ୱରରେ ) ଖାଲି କଣ୍ଠ ପଚଙ୍ଗ ନୁହନ୍ତି—ମଣିଷ !

ଧର୍ମପାଳ—ମହାରାଜଙ୍କର ହୁକୁମ ?

ସୋମନାଥ—କିଏ ଜାଣେ ? ଆମେ ବୁଝୁଁ ରାଜାଙ୍କ ଚାକରମାନଙ୍କ ହୁକୁମ—ଆମରି ହୁକୁମ—ରାଜାଙ୍କ ଚାକର ଆଉ କିଏ କି ? ଯାଅ ବାବୁ, ନଅରକୁ ଏଇ ସିଧା ବାଟ ।

ଧର୍ମପାଳ—( ସବିସ୍ମୟ ) କିନ୍ତୁ ଏ କି ଅସମ୍ଭବ ହୁକୁମ—କଥା କହିବେ ନାହିଁ !

ସୋମନାଥ—( ସହଜ ସ୍ୱରରେ ) ହେଁ ହେଁ,—ଚାକିରି ଲାଗୁଛି, ନା ? କାହିଁକି ? କଥାରୁ ତ ସବୁ—ମାଡ଼, ଗୋଳ, ଖୁଣି, ଜନାକାରି—କଥା କହିବାରେ ଯେବେ ଆମର ବାଗସାଗ ଥାନ୍ତା ! ସେଦିନ ଖାଲି ପରି ଏଇ କେନ୍ଦୁ କଥାରୁ ମୁଣ୍ଡଫଟା-ଫଟି ହୋଇଥାନ୍ତା—ମୁଁ କହିଲି ଅଛୁ, ଆଜି ପଞ୍ଚାଏ ଜଗର କଲେ—ନାହିଁ, ମଞ୍ଜି ନ ଥିଲି କେନ୍ଦୁ କୁଆଡ଼ୁ ଆସିବ ? ନିଜେ ଘର ଭିତରୁ ବାହାରିବେ ନାହିଁ, ଯେ ଦେଖି ଆସିବ ତା କଥାକୁ ହସରେ ଉଡ଼େଇବେ । ଚିଡ଼ ଲଗିଲି, ହୁଡ଼କରି

ଢ଼'ପଦ କହିଦେଲ । ହେଲେ ତାଙ୍କର ସାହସ ଦେଖ—ପଞ୍ଚାଠାପାକ ମତେ ଘେରଯାଇ କହୁଚନ୍ତି, ମୋ ପିଠିରୁ ସେମିତି ମଞ୍ଜି ନ ଥିଲ୍ କେଉଁ ବାହାର କରବେ ! ଜଣକୁ ପାଁ ଜଣ—ଅନ୍ୟାୟ ଯୁଦ୍ଧ ତ କରବ, ନ ହେଲେ ଠେଙ୍ଗାଖଣ୍ଡ ହାତରେ ଥିଲେ ମୋ ପାଖ ଭଲ୍ ମାଡ଼ନ୍ତେ ! ତେବେ ବ ଖାଲ ହାତରେ କଣ ହଠା ଗୋଟାଏ ବେକ ମୋଡ଼ ଦେଇ ନ ଥାନ୍ତି ହଠାତ୍ ବୁଝିଗଲ ବୋଲ ସିନା । ଏ ମୂର୍ଖଙ୍କ ସାଥିରେ ଲଗିବ କଅଁ—ହେଲ ଯା,—ସେମିତି କେଉଁ ନାହିଁ ! ହଉ ବାବୁ, ଏଥର ତୁମେ ଉଠିବଟି ।

ଧମ୍ମପାଳ—କନ୍ତୁ କଥା ବନ୍ଦ ହେଲେ କଣ ଏ ସବୁ ବନ୍ଦ ହେବ ? ଗୋରୁ ଛେଳଙ୍କ ଭିତରେ କଥା ସିନା ନାହିଁ, ମରାମରି କଣ କମ୍ ?

ସୋମନାଥ—ବୁଝିଲ୍, କଥା ପରି କଥା କହିଲେ ସିନା ହବ ! କହନ୍ତି ପରା, ତୁଣ୍ଡ ବାଇଦ ସହସ୍ରେ କୋଶ । କହୋ ନିଜ ଗଣ୍ଡାକ କମେଇ ଆମେ ଆମ ଦୁଃଖରେ ଚଳିବା । ଆମର ଏତେ ରଜା ରାଜୁଡ଼ଙ୍କ କଥାରେ ଥାଏ କଣ—ସେ କାହାକୁ ମାଇଲେ କି ଧଇଲେ, ତାଙ୍କ କଥା ତାଙ୍କର—ଆମେ ଅଦା ବେପାରୀ, ଜାହାଜ ମୂଲେଇବା କାହିଁକି ?

ଧମ୍ମପାଳ—ତା' ହେଲେ ଲୋକେ ରାଜାଙ୍କର ନିନ୍ଦା କରିବାରୁ ଏମିତି ହୁକୁମ ହୋଇଚ ?

ସୋମନାଥ—ହେବ ନାହିଁ ? ଏ ଆମର ନିଜ କମେଇ ନା, ରାଜାଙ୍କର ଦୋଷ କଣ ? ରଜା ଗଜା, ଯାହା ବୁଝିଲେ—ତମର ମୂହଁ ବନ୍ଦ ହେଲେ କେତେ, ମୁଣ୍ଡକାଟ୍ ହେଲେ କେତେ ?

ଧର୍ମପାଳ—(ବ୍ୟସ୍ତ ଭାବରେ ) ଏ କଥା ତମେ ଆଗରୁ ନ କହିଲ କାହିଁକି ? ଆମେ ତ ଏଠାରେ ବସି କଥା ଗପୁଥାଇଁ ?

ସୋମନାଥ—(ଚତୁରତା ଦେଖାଇ) ନାହିଁ, ନାହିଁ, ମୁଁ କଣ ତାହା ଆଗରୁ ନ ବୁଝିଛି ? (ତିନୋଟି ଅଙ୍ଗୁଳି ଦେଖାଇ )ତିନି ଜଣ ! ତିନି ଜଣ ଲୋକ ଏକା ଜାଗାରେ, ବୁଝିଲ ?

ଧର୍ମପାଳ—(ସୋମନାଥର ପୁଅକୁ ଚାହିଁ ) କିନ୍ତୁ ତମ ପୁଅକୁ ମିଶାଇ ଆମେ ତ ଏଠାରେ ତିନି ଜଣ !

ସୋମନାଥ—ତାକୁ ଆଉ ସୁମାର କରୁଚ କାହିଁକି ? ତାହାର ଦଣ୍ଡ ମିଳି ସାରିଚି—(ପୁଅକୁ ) ଦେଖା ତ ନଠ, ପାଟି ଖୋଲ । (ବାଳକ ମୁହଁ ଖୋଲି ଦେଖାଇଲା )

ଧର୍ମପାଳ—( ଚମକି ପଡ଼ି ) ଅଃ, ପିଲାଟିର ଜିଭ ନାହିଁ !

ସୋମନାଥ—( ଅବିଚଳିତ ଭାବରେ ) ଗୁଣିଆ ହେଉଚ କାହିଁକି ? ଦୋଷ କଲା, ଦଣ୍ଡ ପାଇଲା—ମୋ ପୁଅ ବୋଲି କଣ ତାକୁ ଛାଡ଼ ମିଳନ୍ତା ?

ଧର୍ମପାଳ—( ଖାଡ଼ କଣ୍ଠରେ ) କଣ ଦୋଷ କଲା ?

ସୋମନାଥ—ହୁଁ, ସାତକାଣ୍ଡ ରାମାୟଣ ଶୁଣିସାରି—(ଉଚ୍ଚସ୍ୱରରେ) କଥା କହିଲା—ବୁଝିଲ ?

ଧର୍ମପାଳ—( ଦୁଃଖ ଓ ବିସ୍ମୟରେ ) ମହାରାଜଙ୍କର ଆଦେଶ ?

ସୋମନାଥ—ରାଜାଙ୍କର ବିଶ୍ୱାସ ହେଇଚି, ଏ ଦେଶରେ ରାଜଦ୍ରୋହ ଛଡ଼ା ଆଉ କିଛି କଥା ନାହିଁ । ବୁଝିଲ ?

ଧର୍ମପାଳ—କିନ୍ତୁ କଥା କହିଲେ ଜିଭ କାଟ୍ !

ସୋମନାଥ—ହେବ ନାହିଁ ? ରକ୍ଷାଅଛି, ମୁଣ୍ଡକାଟ୍ ହୁକୁମ ହୋଇ ନାହିଁ । ନହେଲେ ଏମିତି ଯାହା ଗଣ୍ଡାଏ ଖାଇ ପାରୁଚି, ସେତକ

ବ ପାରନ୍ତା ନାହିଁ । ତୁମ ଦେଶନାଁ' କଣଟି—କ ଳିଙ୍ଗ ?

ଧର୍ମପାଳ—କଳିଙ୍ଗ ।

ସୋମନାଥ—ହିଁ, ତୁମ କଳିଙ୍ଗରେ କଣ ରାଜା ନାହାନ୍ତି ? ଯାହାର ଯାହା ଇଚ୍ଛା, ସେ ତାହା କହି ଚାଲିଯାଏ ? କାହିଁକି ? କଥା ନ କହିଲେ କଣ ଭାତ ରୁଚେ ନାହିଁ ? ମୋ ପୁଅକୁ ଦେଖୁଚ ଟିକି ? କଥା ନ କହି ଭଲ କୁଆଡ଼େ ତାର ଊଣାଦଶୁଚ ? ବଡ଼୍ଚ ଯେମିତି ବାଉଁଶ କରଡ଼ି ! ଖାଇବା ଶୋଇବା ଚାହିଁବା ଶୁଣିବା କେଉଁ କାମ ତାର ବନ୍ଦ ଅଛି ଭଲ ! ଯୁଆଡ଼େ ଇଚ୍ଛା ଛାଡ଼ିଦେବାକୁ ମୋର ଆଉ ଭୟ ନାହିଁ । ନ ହେଲେ ପିଲ ମତି, କାହା ସାଥିରେ କେତେବେଳେ କଜିଆ କରନ୍ତା କାହା ଝିଅ-ବୋହୂଙ୍କୁ କଣ କହନ୍ତା—

ଧର୍ମପାଳ—( ଗମ୍ଭୀର ହୋଇ ) ବୁଝି ପାରୁଚ—ମହାରାଜଙ୍କର ଏ ଆଦେଶକୁ ତୁମେ ସବୁ ଦୟା ବୋଲି ଭାବୁଚ ।

ସୋମନାଥ—ଦୟା କଣ ଅଳପ ? ଆଉ କେଉଁ ରାଜା ବେଶି ଦୟା କରେ ? ତୁମେ ଚାଲ, ବୁଲ, ଦେଖ, ଶୁଣ, ସେଥିପାଇଁ କିଏ ମନା କରୁଚି ? ଯେତେବେଳେ ଶୋଇଲ କି ଖେଳିଲ, ତା ଉପରେ କଣ କର ବଡ଼୍ଚ ? ଆଉ ବ ଯେତେ ପାର ମନେ ମନେ ସବୁ ଚିନ୍ତା କର—ରାଜାଙ୍କର ମୁଣ୍ଡ କାଟ୍, ରାଜକୁଳର ଧ୍ୱଂସ—ସେଥିରେ କାହାର କ୍ଷମତା, ପାଟି ଫିଟେଇବାକୁ —ଖାଲି ତାକୁ ମୁହଁରେ କହିଲେ ସିନା—

( ଗୀତ ଗାଇ ଗାଇ ଗୋଟିଏ ଖଞ୍ଜ ଭିକ୍ଷୁକ ଆସୁଥିବାର ଦେଖି ତାହା ଆଡ଼କୁ ଚାହିଁଲା । ଭିକାରଟିର ରୂପ ଓ ବେଶଭୂଷା ଭାରତୀୟ ଦାରିଦ୍ର୍ୟର ପ୍ରତିନିଧି )

ଭିକାରି— ଚଳ ନାବିକ ଚଳ ଚଳ

ଉପରେ ଡାକଇ ଝଞ୍ଜା ତୋଫାନ,

ପାଦରେ ଉଚ୍ଛୁଳେ ଜଳ !

ଚଳଚଳ !

ଛିଡ଼ିଛି ଦାଉଡ଼ି

ଉଡ଼ିଛି ଯେବେ ରେ ପାଲ

ଅତଳ ଅକୂଳେ

ଭସାଇ ତରଣୀ ଚାଲ

ନ ଚାହିଁ ପଛକୁ ନ ଶୁଣ ବାରଣ

ସକଳ ଭୁବନ ହେଉ ଅକାରଣ

ଜୀବନର ତେଜେ ଜଳଉଠୁ ତୋର

ମରଣର ହଳାହଳ

ଚଳ ଚଳ !

ସୋମନାଥ—ଚଳାଚଳ କଥା ନୁହେଁ ରେ—ଚାଲ୍, ବୁଲ୍, ଖା, ଶୁଣ୍—ଖାଲି କଥା କହିବାକୁ ମନା ।

ଭିକାରି—ବାବା, ଭିକ୍ଷାଣୀ ବାବା !

ସୋମନାଥ—ଭରି ଆଚମିତ କଥା ! ଏ ରାଜ୍ୟ ଗୋଟାକ ସମସ୍ତେ ଦାମୀ, ଏଇ ଏକା ଭିକ୍ଷାଣୀ !

ଧର୍ମପାଳ—କଣ ଭିକ୍ଷା କରିବାକୁ ମନା ?

ସୋମନାଥ—ଭିକ୍ଷା କରିବାକୁ ନୁହେଁ—କଥାକହିବାକୁ, ଗୀତ ଗାଇବାକୁ ।

ଧର୍ମପାଳ—ଭିକାରି ମଧ—

ସୋମନାଥ—ହଁ ହେ, ଭିକାରିଙ୍କ ପାଇଁ ତ ଆମଠାରୁ ଆହୁରି କଡ଼ା ଆଇନ ଦରକାର । ଅମେ ସିନା ଦୋଷ କରୁ ମର୍ତ୍ତ୍ୟରେ,

ସେ କରନ୍ତ ସ୍ୱର୍ଗରେ । ଆମେ ଦୋଷ କଲେ ଜଭ କାଟ୍, ନ ହେଲେ ମୁଣ୍ଡ କାଟ୍ । ତାଙ୍କ ପାପରୁ ସେମନ୍ତ କଏ କଣା, କଏ ଙ୍ଗେଣ୍ଟା, କଏ କାଲ୍ । ତାଙ୍କୁ ସବୁ ଦାନ କରିବା ଯାହା, ପାପ ଅନ୍ୟାୟକୁ ଲାଞ୍ଚ ଦେବା ତାହା । ସେଥିରେ ଧର୍ମ ହୁଏ ନାହିଁ ଯେ, ପାପ କରାଯାଏ ।

ଭିକାରି—ବାବା, ଯେ ସ୍ୱର୍ଗର ଆଇନ ନ ମାନି ଦଣ୍ଡ ପାଇ ସାରିଛି, ତା ପାଇଁ ଆଜ ମର୍ତ୍ତ୍ୟର ଆଇନ ବେ-ଆଇନ କଣ ! ଯେତେ ପ୍ରାଶ୍ଚିତ କଲେ ଅନ୍ଧ ଆଖି ଫେରିପାଇବ, ନା ଙ୍ଗେଣ୍ଟାର ଗୋଡ଼ ଗଜୁରି ଉଠିବ ? ତୁମେ ପୁଣ୍ୟବନ୍ତ ବାବା, ଆଇନ ମାନି ଚଳୁଚ—ସ୍ୱର୍ଗଗାମୀ ହୁଅ ।

ସୋମନାଥ—( କ୍ରୁଦ୍ଧ ହୋଇ ) କରେ, ଭାରି ବଡ଼ି ବଡ଼ି ତ କଥା କହୁଚୁ—( ହାତୁଡ଼ିକୁ ଦେଖାଇ ) ଦେଖୁଚୁ ? —ଟିକିଏ କଣ ଙ୍ଗେଣ୍ଟା ହେଇଚୁ—କଣ, କହିଲୁ ଆଜ ଥରେ—

ଭିକାରି—( ସାହାଯ୍ୟ ଆଶାରେ ଧର୍ମପାଳ ପ୍ରତି ) ବାବା,ମୁଁ କଣ ଅନ୍ୟାୟ କହିଲି ?

ସୋମନାଥ—( ଅଧିକ କ୍ରୁଦ୍ଧ ହୋଇ ) ନାଃ, ନ୍ୟାୟ କହିଚୁ, ତୋ ମୁଣ୍ଡ କହିଚୁ । ମୁଁ ଯେମିତି କଚ୍ଛୁ ବୁଝିପାରେ ନାହିଁ । କାହିଁକି, ତୁ ସ୍ୱର୍ଗଗାମୀ ହେଲେ ?

ଭିକାରି—ବାବା, ଆମେ ପାପୀ ଜୀବ ସ୍ୱର୍ଗକୁ ଯିବୁ ତ ନରକ କାହାପାଇଁ ?

ସୋମନାଥ—ଆରେ ବାଃ, ବାଃ ଭଲ ଛଟାଗାଳି ଆସେ ( ଧର୍ମପାଳ ପ୍ରତି )—ଦେଖୁଚ, ମୋହର ପିଲା ପୁଅ ପାଖରେ ବସିଚି—କେଡ଼େ ବହପ ତାର !

ଧର୍ମପାଳ—( ମୃଦୁ ହସି ) ତମ କଥା ଯେମିତି ଠିକ୍, ତା କଥା ବି

ସେମିତି ଠିକ୍ । ସ୍ୱର୍ଗକୁ ଯାଅ, ମର୍ତ୍ତ୍ୟରେ ରହ, ବରାବର ବନ୍ଧା ଆଇନ ମାନିବାକୁ ହେବ—ରାଜାର ଆଉ ଦେବତାର । ଖାଲି ଫରକ ଏତିକି ଯେ, ରାଜା କହେ କଣ ନ କରିବ, ଦେବତା କହେ କଣ କରିବ । ମର୍ତ୍ତ୍ୟରେ ରହିବାକୁ ଚୋରି ଡକାୟତି କରିବ ନାହିଁ, ସ୍ୱର୍ଗକୁ ଯିବାକୁ ହେଲେ ଦାନ ଧ୍ୟାନ କରିବ ।

ସୋମନାଥ—ଯେତେ ହେଲେ ମର୍ତ୍ତ୍ୟରେ ପାପ କଲେ କ୍ଷମା ଅଛି; କିନ୍ତୁ ସ୍ୱର୍ଗରେ ଯେ ପାପ ଆଚରଣ କରନ୍ତି—

ଭିକାରି—ଆମେ ନାରକୀ ପାପୀଯାକ ତୁମ ପୁଣ୍ୟବନ୍ତ ଲୋକଙ୍କର ବେଶି ଲୋଡ଼ା—ଆମ ଭିତରୁ ବେଶି ଲୋକଙ୍କ ମତ ନ ହେଲେ ସ୍ୱର୍ଗକୁ ଯିବା ସହଜ ନୁହେଁ—ତୁମ ଇଚ୍ଛା ଖାଲି ବିନା ଖର୍ଚ୍ଚରେ ସ୍ୱର୍ଗକୁ ଉଠିଯିବ ।

ସୋମନାଥ—ତୁ ମୋ ଖର୍ଚ୍ଚ କଥା କଣ ଜାଣୁଛୁ ରେ ? ତୁହୋଇ ମୁଣ୍ଡ ମୋ ଖର୍ଚ୍ଚ କଥା—( ଦୂରକୁ ଚାହିଁ ଚମକି ପଡ଼ି ) ହେଇଛି ଏଥର—ଠିକ୍ ହେଇଛି—ସ୍ୱର୍ଗ ନରକ ଯେ ଆଉ ଇଚ୍ଛା ( ପ୍ରଥମେ ନିଜ ମୁହଁରେ ଓ ପରେ ଧର୍ମ୍ମପାଳ ମୁହଁରେ ହାତ ଦେଇ ଦୂରକୁ ଅଙ୍ଗୁଳି ଦେଖାଇଲି ) ଚୁପ୍, ଚୁପ୍—ଏଇ ଦେଖ—ସ୍ୱର୍ଗର ବାଟ ( ଭିକାରି ) ପ୍ରତି ଯା, ଯା, ତୁ ଆଗ ଏଠାରୁ ଯିବୁଟି, (ଧର୍ମ୍ମପାଳଙ୍କୁ) ଆଉ ତମେ ବାଟୋଇ ମଣିଷ—ଏଠାରେ ତମକୁ ଦୁଃଖ ସୁଖ ହେବାକୁ କିଏ ଭଲ ଡାକୁଥିଲା ? ( ଧର୍ମ୍ମପାଳ ଖଞ୍ଜି ହସ୍ତରେ କିଛି ଦାନ କରିବାକୁ ଦେବା ମାତ୍ରେ ଦୁଇଜଣ ନଗରରକ୍ଷକଙ୍କର ଦ୍ରୁତ ପ୍ରବେଶ )

ପ୍ରଥମ କୋଟୁଆଳ—(ବ୍ୟଙ୍ଗ ସ୍ୱରରେ) ଚାଲୁ, ଚାଲୁ—ଭଲ ଜମାଣ ତ ଚାଲିଛି ।

ଦ୍ୱିତୀୟ କୋତୁଆଲ—ସବୁବେଳେ ଆମ ଗୋଡ଼କୁ ଖାଲି ଚାହିଁ ବସିଥିବ—ଟିକିଏ କର ଆଡ଼େଇବା ଯାକେ ।

ପ୍ରଥମ କୋତୁଆଲ—ଆଜ ଯେମିତି ଦୂରରୁ ଆମ ଉପରେ ନଜର ପଡ଼ିଯିବ, ଉଃ, ଯେମିତି ଜଣେ ଜଣେ ସାଧୁପୁରୁଷ ।

ଧର୍ମପାଳ—( ଅସନ୍ତୁଷ୍ଟ ହୋଇ ) କଣ କହୁଚ ଏ ସବୁ ?

ଦ୍ୱିତୀୟ କୋତୁଆଲ—ନାଃ, କଣ କହୁଚୁ, ତମେ କାହିଁକି ବୁଝିବ ? ଚେଇଁ ଶୋଇବ ଯେ—

ପ୍ରଥମ କୋତୁଆଲ—( ଧର୍ମପାଳଙ୍କ ସର୍ବାଙ୍ଗକୁ ଚାହିଁ ) ଆହା—କାହିଁକି ବୁଝିବ ? ଗେରୁଆ ପିନ୍ଧିଚ ପରା—ପରାକୃତ କଥା-ଗୁଡ଼ାକ ବୁଝିବ ?

ଦ୍ୱିତୀୟ କୋତୁଆଲ—ତୁମର ସବୁ କଣଅଛି, ଯେଉଁ ସୁଖରେ ସେ ଋଷି ଗପ କରିବ—ଫଳ ହେବ କଣ ନା, ଆମ ଘରେ କାନ୍ଦ-ବୋବା—ପିଲାପିଲି ଉପାସ ।

ଧର୍ମପାଳ—ଆମେ ଋଷି ହେଲେ ତୁମ ଘରେ କାନ୍ଦ-ବୋବା ?

ଦ୍ୱିତୀୟ କୋତୁଆଲ—ହଁ ହେ, କିଛି ବୁଝ ନାହିଁ—ମାୟା ତପସୀ ।

ପ୍ରଥମ କୋତୁଆଲ—ବୁଝିବ ସବୁ, ବଳେ ବୁଝିବ—ଆଗ ଉଠି ଆସିବଟି ।

ଧର୍ମପାଳ—( ମିନତି ସ୍ୱରରେ ) ଏଠାରେ ଆମେ ସବୁ ରୁଣ୍ଡ ହେବା କଥା କହୁଚ ?

ଦ୍ୱିତୀୟ କୋତୁଆଲ—ବାଃ, କେହି ତ କିଛି କହି ନାହିଁ, ଗୁଏଁ ସବୁ ବୁଝିଗଲ ! ମାହାଳିଆକୁ ଫଟେଇ ହେଉଥିଲ କାହିଁକି ଭଲ ?

ଧର୍ମପାଳ—ମୁଁ ସେଥିପାଇଁ ଦାୟୀ—ବିଦେଶୀ ମୁଁ—ନୂଆ ହୋଇ ଏଦେଶକୁ ଆସୁଚି—ବାଟ ଘାଟ ଜାଣେ ନାହିଁ; ଏମାନଙ୍କୁ ପଚାରୁଥିଲି ରାଜନଅରକୁ ବାଟ ।

ପ୍ରଥମ କୋଟୁଆଳ—ଓହୋ, ସେଥିପାଇଁ ସନ୍ତ୍ରାଏ କରିବା ଦରକାର ହେଲା ? ରାଜନଅର ଯେମିତି ଜଙ୍ଗଲ ମଝିରେ ଗୋଟାଏ ଭଳି ହୁଙ୍କା ହେଉଛି ଯେ ଖୋଜି ପାଇବା କଷ୍ଟ ।

ଧର୍ମପାଳ—ରାଜନଅର ହେଲେ ବି, ଏ ଦେଶଲୋକେ ତାହା ଖୋଜିବା ଯେମିତି, ବିଦେଶୀ ଲୋକ କାହାକୁ ନ ପଚାରି ତାହା ପାଇବା ମଧ୍ୟ ସେହିପରି ଆଶ୍ଚର୍ଯ୍ୟର କଥା ।

ପ୍ରଥମ କୋଟୁଆଳ—ହେଉ, ତେବେ ଆସିବା ହେଉ—ରାଜନଅରକୁ ସିଧା ବାଟ ବତେଇ ଦେବୁ—ଆମ ପାଖରେ ଏ କଥାଗୁଡାକ କାଲ ଆଗରେ ମଲା—( ଖଞ୍ଜ ପ୍ରତି କୌତୁକ ଦୃଷ୍ଟିରେ ଚାହିଁ ) ଏ ମୂର୍ତ୍ତିଟି ପୁଣି କିଏ ?—ସାକ୍ଷାତ୍ ଅଷ୍ଟବଙ୍କ ।

ଭିକାରି—( ବିନୀତ ସ୍ୱରରେ ) ବାବା, ଖଞ୍ଜ ଭିକାରୀ ମୁଁ ।

ପ୍ରଥମ କୋଟୁଆଳ—ହଁ ସେ କଥା ତୋ ଟାଙ୍କ ଲଙ୍ଗୁରୁ ବୁଝା-ପଡ଼ୁଛି— ଚାଲ୍ ବାବା, ରାଜଦରବାରରେ ବହୁତ ଭିକ୍ଷା ।

ଭିକାରି—ରାଜଦରବାର ଭିକ୍ଷା ତୁମମାନଙ୍କ ପାଇଁ ବାବା, ଆମ ଅନ୍ଧ ଖଞ୍ଜଙ୍କ ପାଇଁ ନୁହେଁ ।

ପ୍ରଥମ କୋଟୁଆଳ—( କ୍ରୁଦ୍ଧ ହୋଇ ) ଚାଲ୍ କହୁଛି—ଫେର୍ କଥା କହିବୁ ତ ଜାଣୁ ?

ଭିକାରି—( ଧୀର ସ୍ୱରରେ ) ଜାଣେ ବାବା, ତୁମକୁ ନ ଜାଣି ଏ ମହୀମଣ୍ଡଳରେ ପୁଣି—

ପ୍ରଥମ କୋଟୁଆଳ—ଫେର୍ ? ( ହାତରେ ଧରିଥିବା ଠେଙ୍ଗାକୁ ଦେଖାଇ ) ଦେଖୁଚୁ ?

ଭିକାରି—ତୁମକୁ ତ ଦେଖୁଛି, ତୁମଠାରୁ ଠେଙ୍ଗାଟା କ'ଣ ଅଧିକା ?

ଦ୍ୱିତୀୟ କୋଟୁଆଳ—ବାକ୍‌ଚାତୁରୀ ଶୁଣିବାକୁ ଆମେ ଆସିନାହୁଁ ,

ବୁଝିଲୁ ? କାମ କରିବାକୁ ଆସିଚୁ । ( ସୋମନାଥକୁ ଚାହିଁଲା । ସେ ଏପର୍ଯ୍ୟନ୍ତ ନିତାନ୍ତ ସାଧୁ ପ୍ରକୃତିର ଲୋକ ପରି ବସିଥିଲା ) କିରେ ତୁ କିଛି କାହିଁ ହଲଚଲ ହେଉ ନାହୁଁ—ଆଉ ଏ ଟୋକାଟା ? ( ବାଳକ ତାହାର ଜିହ୍ୱାହୀନ ମୁଖକୁ ଖୋଲି ଦେଖାଇଲା ) ହେଲା, ହେଲା, ଏ ପିଲାଟା ଦଣ୍ଡ ପାଇ ସାରିଚି; ( ସୋମନାଥକୁ ଚାହିଁ ) ଆଉ ତୁ ? ତାର ବାପା ନା ? ( କିନ୍ତୁ ସେ କେବଳ ସମ୍ମତିସୂଚକ ମସ୍ତକ ସଞ୍ଚାଳନ କଲା ) ।

ପ୍ରଥମ କୋଟୁଆଲ—( ସୋମନାଥର ସଙ୍କୁଚିତ କାତର ମୁଖରୁ ଅନୁମାନ କରି ଉଃ; ଢଙ୍ଗ ଦେଖ ! ଦେଖି, ମୁହଁ ଫିଟାଇଲୁ । ( ସେ କିନ୍ତୁ ପ୍ରାଣପଣ ଓଠ ବନ୍ଦ କରି ମୂକ ଦୃଷ୍ଟିରେ ଚାହିଁ ରହିଲା ) ନାଃ, ସହଜରେ ଓଠ ଖୋଲିବ ନାହିଁ—ଦାନ୍ତ ପଡ଼ିଗଲା ପରି ! ( ଦ୍ୱିତୀୟ ପ୍ରତି ) ଦେଖିବଟି ଭାଇ' ତୋ ଛୁରି ଖଣ୍ଡିକରେ ମୁହଁ ଫିଟିବ କି ନାହିଁ । ନ ହେଲେ ଏଇ ଠେଙ୍ଗାରେ ପରୀକ୍ଷା କରିବା (ଦ୍ୱିତୀୟ କୋଟୁଆଲ ଛୁରି କାଢ଼ି ସୋମନାଥର ମୁହଁ ଫିଟାଇବାକୁ ଯିବାରୁ ସେ ପଳାଇବାକୁ ବାହାରିଲା, କିନ୍ତୁ ସଙ୍ଗେ ସଙ୍ଗେ କୋଟୁଆଲ ଦୁହେଁ ତାକୁ ଧରିନେଲେ । ଦୁଇଜଣଙ୍କ ହାତରୁ ମୁକ୍ତି ପାଇନପାରି ସେ ହତାଶ ହେଲା ) ।

ସୋମନାଥ—ହେ, ମତେ ଭଲା ଗୁଡ଼ିଦିଅ—ସତକହୁଚି, ମୋର ଜିଭ ନାହିଁ, ମତେ ଦାଣ୍ଡା ଝାଡ଼ଖାଣ୍ଡି ଠାକୁରାଣୀ ।

ଦ୍ୱିତୀୟ କୋଟୁଆଲ—ଦେଖି ଦେଖି ଆଁ କଲୁ ? ଆଁ ନ କଲେ ଛାଡ଼ିବ ନାହିଁ । ହେଃ, ମତେ ବୋକା କରି ପାଇଚୁ, ନା ? ( ଛୁରି ଧରି ଉଦ୍ୟତ )

ପ୍ରଥମ କୋଟୁଆଲ—(ହସିଦେଇ ଦ୍ୱିତୀୟ କୋଟୁଆଲ ପ୍ରତି) ତତେ ରଜାଘର ଚାକିରି କିଏ ଦେଲା କେଜାଣି; (ସୋମନାଥକୁ ଚାହିଁ)

ଗ୍ଲ୍ ଗ୍ଲ୍—ଗ୍ଲାଖି ରଖି ଦେ ।

ଦ୍ୱିତୀୟ କୋଟୁଆଳ—( ବୁଝିପାରି ) ଆରେ ସତେ ତ ଏଣେ କଥାରେ ବାଟୁଳ ବାଜୁନାହିଁ, ତେଣେ କହୁଛି ଜଉ ନାହିଁ, ମୁଁ ଯେମିତି କିଛି ବୁଝିପାରୁନ । ଏଇଥିରେ ତତେ ଘୁଣ୍ଡଦେବ ପରା ? ଏ ଥରଟାରେ ଭଡତେ ମିଶେଇ ହେବ ୧୦୨ ବକ୍‌ସିସ୍ ମିଳିବ ଦରବାରରୁ । ତୁ ଯେଉଁ ବୃଦ୍ଧି ଖେଳୁଚ୍ , ତତେ ତ ଆଗ ନବା ଦରକାର ।

ସୋମନାଥ—ତମର ଯେମିତି ନବାକୁ ଦରକାର, ମୋର ତ ସେମିତି ରହିବାକୁ ବି ଦରକାର ।

ଦ୍ୱିତୀୟ କୋଟୁଆଳ—ଆରେଯାଃ—ତୋ ଦରକାର ତୋ ଘରେ । ଦୁଇଜଣ ନେବାକୁ ହୁକୁମ ନାହିଁ, ବୁଝିଲୁ ? ଶେଷରେ ଗ୍ଲକରି ଖଣ୍ଡମାନ ନେଇ ଆମ ପିଲା କବଲଙ୍କୁ ଦାଣ୍ଡରେ ବସାଇବୁ ପରା ?

ସୋମନାଥ—ମୋ ପିଲାଏ ଯେ ଏଣେ ଦାଣ୍ଡରେ ବସିବେ—

ଭିକାରି—( କୋଟଆଳ ଦୁହିଁଙ୍କୁ ଗ୍ଲହିଁ ) ତାହାହେଲେ ବାବା, ମୁଁ ଗୋଟିଏ ସହଜ ଉପାୟ ବତେଇ ଦିଏଁ—ତୁମ ଦି'ଜଣଙ୍କ ଜଣେ କିଏ ଆମ ସାଥିରେ ଆସିଲେ ତ କଳ ମେଣ୍ଟି-ଯାନ୍ତା ? ତାଙ୍କ କଥା ରହନ୍ତା, ତୁମ କଥା ବି ରହନ୍ତା ? ଯୋଉ ତିନିକ ସେଇ ତିନି ହୁଅନ୍ତେ—ଖାଲି ଯାହା ଟିକିଏ ମଝିରେ ଅଦଳ ବଦଳ

ପ୍ରଥମ କୋଟୁଆଳ—କଳି ମେଣ୍ଟାଇବାକୁ ବସ୍ଥରପଣ୍ଡି ବସିଛନ୍ତି, ( ହେୟଦୃଷ୍ଟିରେ) ତତେ କେହି ପଗ୍ରୁରୁ ନାହିଁ, ବୁଝିଲୁ ? ( ଅନ୍ୟମାନଙ୍କୁ ) କରେ ନିଜ ଗ୍ଲଏଁ କଣ ଉଠିବ ନାହିଁ, ସମସ୍ତେ ଗ୍ଲହିଁଛ ଠେଙ୍ଗାକୁ ?

ସୋମନାଥ—( ଠିଆ ହୋଇ ) ବସୁରପତି ଆଜ କଣ ବୁଝିବେ ଭଲ ? ମୋ ଘରେ ତ ମୁଁ ଜଣେ ଲୋକ କଥା କହେ, ଆଉ ଦେଖୁଛ ଏହି ବାର ବର୍ଷର ପିଲା—ତାହାର ଯେଉଁ ଦଶା !

ଦ୍ୱିତୀୟ କୋଟୁଆଳ—କାହିଁକରେ ତୋର ମଣ୍ଡଳୀ ମଣିଷ ଅଛୁ —ସେ ତ କଞ୍ଚା ପଦାକୁ ବାହାରେ ନାହିଁ ଯେ ଦଣ୍ଡ ପାଇଥିବ ।

ସୋମନାଥ—ଦଣ୍ଡ ସିନା ପାଇନାହିଁ—ସେ ଭଲ ଆଜଯାଏ ମୋ ଆଗରେ ମୁହଁ ଫିଟାଇଲାଣି ? ଗାଁ ଭିତରେ ପଚାରିଲ, କେଉଁ ଲୋକଟା ତା' କଥା ଶୁଣିଛି ?

ଦ୍ୱିତୀୟ କୋଟୁଆଳ—ଏଁ ଆଜଯାଏ ଚୁ ମାରେ ?

ପ୍ରଥମ କୋଟୁଆଳ—ହଉ, ହଉ, ଏଣିକି ବଳେ ମୁହଁ ଫିଟିଯିବ ଯେ—ମରଦମାନଙ୍କର ଜଭ କଟା ହେଲେ ମାଇପେ ଆଉ କଥା ନ କହି ସିବେ କୁଆଡେ଼ ? ତାଙ୍କ କଥା ସିନା ମରଦ-ଯାକ କହୁଥିଲେ, ଏଣିକି ତାହା ବଳେ ଓଲଟିଯିବ ଯେ !

ଭିକାରି—ସେ କଥା ନ ହେଉ ବାବା—ତାହାହେଲେ ମାଇପଙ୍କ ସାଥିରେ ଆଜଯାଏ ଯେଉଁ ସବୁ କଥା ଘର ଭିତରେ ଲୁଚି ରହୁଥିଲା, ଏଣିକି ସେ ସବୁ ଦାଣ୍ଡରେ ହାଟରେ ଡେଙ୍ଗୁରା ହୋଇଯିବ । ମାଇପେ କହିବେ କଥା ! କାଳ କ'ଣ ଓଲଟି ଗଲାଣି ?

ପ୍ରଥମ କୋଟୁଆଳ—(ତୀବ୍ର ଦୃଷ୍ଟିରେ ଗୁହିଁ) କ' ରେ, ତତେ ପଚା ମନା କରିଥିଲି ?

ଭିକାରି—କାଲିଠାରୁ ତ ଆଉ ତମ ମନା ନ ମାନିବାକୁ ନ ଥିବ— ଆଜ ଭଲ ତା ଆଗରୁ—

ପ୍ରଥମ କୋଟୁଆଳ—ଚୁପ୍ କର । ଚାଲ୍ ସବୁ—ଆମର ଆଉ କାମ ଆଛି ନା—ଉଠ, ଉଠ ( ସମସ୍ତେ ଠିଆ ହେଲେ ) ।

ସୋମନାଥ—( ଅନୁନୟ କରି ) ମୋର ଗୁହାରିଟା କେବେ କିଛି ରହିଲ ନାହିଁ । ମୋର ଏକୁଟିଆ ଘର, ଜଣେ ବୋଲି ଚିହ୍ନା ଲୋକ—

ପ୍ରଥମ କୋଟୁଆଳ—( ଦୃଢ଼ଭାବରେ ) ସେ କଥା ଆମେ କଏ ବିଚାର କରିବାକୁ—ବିଚାରପତି ଅଛନ୍ତି ।

ଭିକାରି—ବାବା, ମୋର ଘର ନାହିଁ କି ଚିହ୍ନା ଲୋକ ନାହିଁ— ସେ କଥା ଭଲ ବିଚାରପତି କିଛି ବୁଝିବେ ?

ପ୍ରଥମ କୋଟୁଆଳ—( ଆଖି ତରାଟି ) ଫେର୍ ? ବିଦ୍ରୂପ ଦେଖ ! ଯେତେ ଦଣ୍ଡ ଦେଲେ ଏ ଲୋକଙ୍କର ପ୍ରକୃତି ବଦଳିବ ଭଲ !

ଧର୍ମପାଳ—( ସହଜ ଭାବରେ ) ଯେ ଦଣ୍ଡ ପାଏ, ତାର ଅବା ପ୍ରକୃତି ବଦଳୁଥିବ, କିନ୍ତୁ ଯେ ଦଣ୍ଡ ଦିଏ, ତା ପ୍ରକୃତି ଜଗତ ଲୋପ ହେଲେ ବି ବଦଳିବ ନାହିଁ ।

ପ୍ରଥମ କୋଟୁଆଳ—ହଉ ଚାଲ ସମସ୍ତେ । ଏ ସବୁ କଥାର ଜବାବ ରାଜ ଦରବାରରେ ।

ଦ୍ୱିତୀୟ କୋଟୁଆଳ—( ପ୍ରଥମକୁ ଚାହିଁ ) ସମସ୍ତେ ?

ପ୍ରଥମ କୋଟୁଆଳ—( ଦ୍ୱିତୀୟକୁ ) କିରେ ତୁ ପୁଣି ଚମକୁଚୁ କାହିଁକି ? ସମସ୍ତେ କଏ, ମୋଟେ ତ ତିନି ଜଣ—ଖାଲି ଏହି ଟୋକାଟାକୁ ଛାଡ଼ ।

ଦ୍ୱିତୀୟ କୋଟୁଆଳ—ତେବେ ଅନ୍ଧ, ଖଞ୍ଜ, ଭିକାରି, ବିଦେଶୀଙ୍କୁ ଛାଡ଼ିଦବା ?

ପ୍ରଥମ କୋଟୁଆଳ—ଆରେ ମୂର୍ଖ, ସବୁଦିନେ ତୋର ଏହି ପଛ ବୁଦ୍ଧି । ହୁକୁମ ତ ଅଛି, ଯେ କଥା କହିଲ ତାକୁ ବାନ୍ଧ— ଆଉ ଯେ ଯେତେ ବାନ୍ଧିଲ ତାହାର ବକ୍‌ସିସ୍—ଆଉ ଯଦି ନ ବାନ୍ଧିଲ ?—କାମଖଣ୍ଡ ହାତରୁ ଖସିଲ ।

ଦ୍ୱିତୀୟ କୋତ୍ୱାଲ—ତେବେ ତା’ ଭିତରେ ତ ପୁଣି ବିଚାର ଅଛି ?

ପ୍ରଥମ କୋତ୍ୱାଲ—ଆରେ ରଖ୍ ତୋ ବିଚାର । ବିଚାର କରୁଥିଲେ ତ ଆଜି ମନ୍ତ୍ରୀ ହୋଇ ରାଜାଙ୍କ ପାଖରେ ବସିଥାନ୍ତି । କେତେ କଥା ନ କହେ କିଏ ? ସେ ତ ଆଗରେ ପଡ଼ିଲା ତାକୁ ବାନ୍ଧ—ଆମେ ହଜାର ବିଚାର କଲେ ଭଲା ଆମର କିଛି ହେବ, ନା ଆଉ କାହାର କିଛି ହେବ ? (ସମସ୍ତେ କୋତ୍ୱାଲଙ୍କ ସାଥିରେ ଗଲେ)

ଦ୍ୱିତୀୟ କୋତ୍ୱାଲ—ସେତେ ହେଲେ ଠିକ୍ ଭୁଲ୍ ତ ଦୁଇଟା କଥା—

ପ୍ରଥମ କୋତ୍ୱାଲ—ଦୁଇଟା କଥା ନୁହେଁରେ ବୋକା—ତିନିଟା । ଠିକ୍ ଗୋଟାଏ, ଭୁଲ୍ ଗୋଟାଏ—ଆଉ ଗୋଟାଏ କ’ଣ ଜାଣୁ ? —ପେଟପାଟଣା !

(ଯବନିକା)

# ଦ୍ୱିତୀୟ ଅଙ୍କ

[ ମଗଧର ରାଜକକ୍ଷ—ଭାରତ ସାମ୍ରାଜ୍ୟର ଐଶ୍ୱର୍ଯ୍ୟକେନ୍ଦ୍ର । ଭିତରର ସାଜସଜ୍ଜା ପୁରୁଣା ଧରଣର ହେଲେହେଁ ଆଜିକାଲିର ରୁଚି ଦୃଷ୍ଟିରେ ସେ ସବୁର ନିଷ୍ଠା ଓ ଶୁଚିତା ଅଛି । ଆସନ, ତକିଆ ଓ ଗାଲିଚା ପ୍ରଭୃତି ଭାରତୀୟ କାରିଗରମାନଙ୍କ ଓସ୍ତାଦୀର ନିଦର୍ଶନ । କବାଟ, କାନ୍ଥ ଓ ଝରକାଗୁଡ଼ିକ ଅଜନ୍ତାର ଭାସ୍କର୍ଯ୍ୟ ମନେପକାଇଦିଏ ଏବଂ ବୌଦ୍ଧ ନ ହେଲେହେଁ ଅଶୋକଙ୍କ ରାଜତ୍ୱକାଳରେ ଅଜନ୍ତା ଶିଳ୍ପର ପ୍ରଚଳନ ଥିବାର ପ୍ରମାଣ କରେ । ରାଜୋଚିତ ଆସନରେ ଅଶୋକ ଉପବିଷ୍ଟ । ତାଙ୍କର ତୀକ୍ଷ୍ଣ ନାସା ଓ ପ୍ରଶସ୍ତ ଲଲାଟ କେବଳ ନିଜ ସୌଭାଗ୍ୟର ପ୍ରତୀକ ନୁହେଁ, ପୃଥିବୀର ଭାଗ୍ୟଗଠନରେ ମଧ୍ୟ ତାହାର ଉପକରଣ ଅଛି ବୋଲି ସୂଚିତ । ଚିବୁକ ଓ ଅଧର ଦୃଢ଼—ଚକ୍ଷୁ ତୀବ୍ର ଅଥଚ ଅଚଞ୍ଚଳ । ସେଥିରୁ ମନେହୁଏ, କଥା ତାଙ୍କର ବୀଜଗଣିତ ପରି ସଂଯତ ଏବଂ କର୍ମ ଉତ୍ତପ୍ତ ଲୌହ ପରି କଠୋର ।

ତାଙ୍କୁ କି କି କର୍ମ କରିବାକୁ ହେବ ଏବଂ କିପରି ଭାଷାରେ କଥା କହିବାକୁ ହେବ, ପୃଥିବୀକୁ ଆସିବା ପୂର୍ବରୁ ଯେପରି ସେ ତାହା ସ୍ଥିର କରି ରଖିଛନ୍ତି । କର୍ମଠତା ହିଁ ତାଙ୍କର ସବୁ କ୍ଷେତ୍ରରେ ସୁସ୍ପଷ୍ଟ ଏବଂ ତାହାର ଭିତରେ ଚିନ୍ତାର ସତ୍ତା ନିଭିଯାଇଅଛି । ସେଥିପାଇଁ ସବୁ କାର୍ଯ୍ୟ ତାଙ୍କର ନାଟକୀୟ ଅଭିନୟ ପରି ହଠାତ୍ । କାରଣ ସେ ଅଭିନୟ ଉପରେ ବାଧା ଦେବା କୌଣସି ପାର୍ଥିବର ଆୟତ୍ତାଧୀନ ନୁହେ । ତାଙ୍କର ସାଧାରଣ ଅବସ୍ଥା ଏପରି ଭୟଙ୍କର ଯେ, ଲୋଭ, ମୋହ ପ୍ରଭୃତି ଦ୍ୱାରା ସେ କ୍ୱଚିତ୍ ଆକ୍ରାନ୍ତ ହେବାର ବାହାରକୁ ଦେଖାଯାଇଥାଏ । ସେଥିପାଇଁ କଥାରେ ସେ ଯେତେବେଳେ ନମ୍ର, କର୍ମରେ ସେତେବେଳେ ନିରାପଦ । ଯେହେତୁ

କଥା କହିଲାବେଳେ ସେ କାମ କରନ୍ତି ନାହିଁ । ଯୁଦ୍ଧ ଓ ନରହତ୍ୟାର ଆଦେଶକୁ ଏପରି ସହଜ ଭାଷାରେ ସେ ପ୍ରକାଶ କରନ୍ତି ଯେ କୌଣସି ସୁନ୍ଦରୀର ସ୍ପର୍ଶ ସେତେବେଳେ ତାଙ୍କୁ ଅଧିକ କୋମଳ କରିପାରେ ନାହିଁ । ଭୂଲିଣ ପାର ହେଲେହେଁ ବସ୍ତୁସବୁ ଭ୍ରୂକ୍ଷେପ କରିବାର ଦୀନତା ତାଙ୍କ ମାଂସପେଶୀରେ ନାହିଁ ।

ବିଜୟ ଓ ବିଭୂତିର ଲାଳସାରେ ଏବେ ମଧ୍ୟ ତାଙ୍କର ଦୁଇ ଚକ୍ଷୁ କ୍ଷୁଧାର୍ତ୍ତ ଏବଂ ଯଶ ଆଶାରେ ହତ୍ୟା ଓ ନିଷ୍ଠୁରତାକୁ ଯେପରି ଖେଳନା କରି ସେ ଭାବନ୍ତି, ଦୟା ଓ କୋମଳତାକୁ ମଧ୍ୟ ସେହିପରି ଅସମ୍ଭବ ମନେ କରନ୍ତି ନାହିଁ—ଦୁଇ ବାହୁ ଯେପରି ସମସ୍ତ ସୌରଜଗତକୁ ଆବଦ୍ଧ ରଖିବାକୁ ଚାହେଁ ।

ବିଶ୍ୱର ରଙ୍ଗମଞ୍ଚରେ ଯେ କେତୋଟି ଚରିତ୍ର ବାହୁ କିମ୍ବା ମସ୍ତିଷ୍କର ପ୍ରାଧାନ୍ୟ ପ୍ରତିଷ୍ଠାଦ୍ୱାରା ଦୀର୍ଘକାଳ ସ୍ଥାୟୀ ହେବାକୁ ଇଚ୍ଛା କରେ ସେହିମାନଙ୍କ ପରି ଅଶୋକ ମଧ୍ୟ ପୃଥିବୀ ପକ୍ଷରେ ଭୟାବହ ଏବଂ ସେହିମାନଙ୍କ ପରି ଦାରୁଣ ସ୍ୱାର୍ଥପର । ସେ ସ୍ୱାର୍ଥ ଯେପରି ଉତ୍କଟ, ସେହିପରି ବିରାଟ—ଶ୍ରାବଣର କଳା ମେଘ ପରି ପ୍ରଳୟାଗ୍ନି ଉଦ୍‌ଗିରଣ କରିପାରେ, ଜଳ-ସେଚନ ଦ୍ୱାରା ଜୀବନର ସୃଷ୍ଟି ମଧ୍ୟ ଆଣିପାରେ—ସବୁ ଅବଶ୍ୟ ନିଜର ଖ୍ୟାତି ଓ କଲ୍ୟାଣ ଉଦ୍ଦେଶ୍ୟରେ ।

ଅଶୋକଙ୍କ ନିକଟରେ ପ୍ରାଚୀନ ଗ୍ରନ୍ଥର ଧଳୀ ଚପକନ୍ ପିନ୍ଧା ନୈୟାୟିକ ଗଣିଭନ୍ତି । ଜଗତରେ ଯେଉଁମାନେ ଆଉ କିଛି କାମ କରିବାକୁ ନ ପାଇ ଶେଷରେ କେବଳ ବହି ପଢ଼ନ୍ତି, ସେହିମାନଙ୍କ ପରି ଅକର୍ମା ଚେହେରା ଏବଂ ସେଥିଲାଗି କର୍ମ ଯେଉଁମାନେ କରନ୍ତି ସେମାନଙ୍କ ପ୍ରତି ଅସହିଷ୍ଣୁ । ନୀତି ଅନୀତି, ପାପ ପୁଣ୍ୟ, ସତ୍ୟ ମିଥ୍ୟା ପ୍ରଭୃତିକୁ ଅନ୍ୟମାନେ ଯେପରି ଦେଖି-ଯାଇଚନ୍ତି, ତାକୁ ନିର୍ବିବାଦରେ ଗ୍ରହଣ କରିବାକୁ ସେ ମାନସିକ ଗୋଲାମୀ ବୋଲି ଭାବନ୍ତି । କାରଣ ସେ ସ୍ଥିର ଜାଣନ୍ତି ଯେ, ଜଗତର ଏହି ବସ୍ତୁ-ଗୁଡ଼ିକୁ ନେଇ ବିବାଦ ଉପସ୍ଥିତ ହେଲେ, କୌଣସି ପକ୍ଷ ତାଙ୍କୁ

ବିଶ୍ୱସଭରେ ବସିବାକୁ ଡାକିବେ ନାହିଁ । ସେଥିପାଇଁ ନିମ୍ନପଦରେ ସେ ପାପକୁ ପୁଣ୍ୟ କହନ୍ତି; ସତ୍ୟକୁ ମିଥ୍ୟା କହନ୍ତି; ସବୁ ପ୍ରାଚୀନ ମତକୁ ଉପହାସ କରନ୍ତି—ଭଗବାନଙ୍କୁ ଦେବତା କହନ୍ତି ନାହିଁ ।

ଅଧିକାଂଶ ବିଦୂଷକଙ୍କ ପରି ଦୟା, କ୍ଷମା, ମୈତ୍ରୀ, ମମତା ପ୍ରଭୃତି ବିଷୟରେ ତାଙ୍କୁ ମନୁଷ୍ୟ ଛଡ଼ା ଆଉ ଯାହା କିଛି ବୋଲିଯାଇ ପାରେ । କାରଣ ନିଜକୁ ମାନବ ସମାଜର ଊର୍ଦ୍ଧ୍ୱରେ ଦେଖିବାକୁ ଯାଇ ଅନ୍ୟମାନେ ଯାହା ଦେଖନ୍ତି, ସେ ବିଷୟରେ ସେ ଅନ୍ଧ, ଅନ୍ୟମାନେ ଯାହା ଶୁଣନ୍ତି, ସେଥିପ୍ରତି ସେ ବଧିର । ଷଡ଼୍‌ରିପୁକୁ ରିପୁ ନ କହି ସେ ମଣିଷର ନିତାନ୍ତ ଦରକାରୀ ବନ୍ଧୁ ରୂପେ ଭାବନ୍ତି ଏବଂ ଅନ୍ୟ ଏକ ସପ୍ତମ ରିପୁ ତାଙ୍କର ଆବିଷ୍କାର—ଯାହାକୁ ସେ ଏକମାତ୍ର ଶତ୍ରୁ ବୋଲି କହନ୍ତି । ତାହା ହେଉଛି ଲଜ୍ଜା ଅଥବା ସଙ୍କୋଚ । ଲଜ୍ଜା ସଙ୍କୋଚ ତ୍ୟାଗ କଲେ ମାନବଜାତିରୁ ଯେ ବହୁ ଅକଲ୍ୟାଣ ଦୂର ହେବ, ଏହା ତାଙ୍କର ବିଶ୍ୱାସ । ସେଥିପାଇଁ ସେ ଯାହା ଭାବନ୍ତି, ନିର୍ଭୟରେ ତାହା ପ୍ରକାଶ କରନ୍ତି । ଏହାର ଅବଶ୍ୟ ଅନ୍ୟ ଏକ ପ୍ରଧାନ ହେତୁ ଏହି ଯେ, ତାଙ୍କର ସ୍ପଷ୍ଟବାଦିତା ଯୋଗୁଁ ସେ ମଗଧ ସମ୍ରାଟଙ୍କର ପ୍ରିୟ ଏବଂ ମୁଖର ହେଲେହେଁ ଘୃଣା ଖାଇବାର ଭୟ ତାଙ୍କର ନାହିଁ । ଆଉ ମଧ୍ୟ ନିଜକୁ ବେଶି ପରିମାଣରେ ଲୁଚାଇ ରଖିବାହିଁ ସର୍ବଶ୍ରେଷ୍ଠ ଚତୁରତା ବୋଲି ତାଙ୍କର ଧାରଣା । ସେଥିପାଇଁ ସମସ୍ତଙ୍କଠାରୁ ସେ ବେଶି କଥା କହିଥାନ୍ତି । ]

ଅଶୋକ—ନା, ଆଜି କିଛି ଭଲ ଲାଗୁନାହିଁ । ମୁଣ୍ଡଟା ବଡ଼ ଗରମ—ଶବ୍ଦଟା ଝିଙ୍କାରିଙ୍କର ଯେମିତି ଅବିରତ ଝମ୍‌ଝମ୍ ଶବ୍ଦ ।

ଗଣଭଣ୍ଡ—ତାହାହେଲେ ରାଜବୈଦ୍ୟଙ୍କୁ ଖବର ଦିଅ; କିନ୍ତୁ ତାଙ୍କ ମୁଣ୍ଡ ଠିକ୍ ଅଛି କି ନାହିଁ, ଆଗ ପରୀକ୍ଷାକରିବା ଉଚିତ ।

ଅଶୋକ—ନା, ଦରକାର ନାହିଁ । ଏ ରାଜ୍ୟରେ କାହାର ମୁଣ୍ଡ ଠିକ୍ ନାହିଁ ।

ଗଣଭଟ୍ଟ—ନ ହେଲେ ରାଜମସ୍ତିଷ୍କ ଅକ୍ଷତ ରଖିବା ପାଇଁ ଦୁଇଟା ଗୋଟାଏ ମୁଣ୍ଡ କାଟନ୍ତୁ ।

ଅଶୋକ—ପ୍ରଥମେ ଅବଶ୍ୟ ତୁମର ମୁଣ୍ଡ କାଟିବାର ସୁବିଧା ଥିଲ, କିନ୍ତୁ ସେଥିରେ କିଛି ଫଳ ନାହିଁ । କୁଞ୍ଜରକର୍ଣ୍ଣର ପରାସ୍ତ ଖବର ଶୁଣି ନ ଥିଲେ ଆଜ କେବଳ ତୁମକୁ ନୁହେଁ, ରାଜସଭାର ସମସ୍ତଙ୍କୁ ହୁଏତ ମୁଣ୍ଡ ହରାଇବାକୁ ହୋଇଥାନ୍ତା ।

ଗଣଭଟ୍ଟ—(ଉତ୍‌ଫୁଲ୍ଲ ହୋଇ) କୁଞ୍ଜରକର୍ଣ୍ଣ ପରାଜିତ ? ତକ୍ଷଶିଳାରୁ ତେବେ କଣ୍ଟା ଗଲା ।

ଅଶୋକ—କିନ୍ତୁ କୁନାଲଙ୍କର କିଛି ଖବର ନାହିଁ !

ଗଣଭଟ୍ଟ—ରାଜକୁମାର କୁନାଲ ! କୁଞ୍ଜରକର୍ଣ୍ଣକୁ ପରାସ୍ତ କରିବା ଯେ ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା !

ଅଶୋକ—ତାଙ୍କ ଉଦ୍ଦେଶ୍ୟ ସଫଳ ହୋଇଚି; ସେ ନିଜେ କିନ୍ତୁ ନିରୁଦ୍ଦେଶ ।

ଗଣଭଟ୍ଟ—(ସନ୍ଦିଗ୍ଧ ହୋଇ) କୁନାଲ କଣ ସିଂହାସନ ବିରୁଦ୍ଧରେ ବିଦ୍ରୋହ କରିବେ ? ନା, କଦାପି ନୁହେ ।

ଅଶୋକ—ବିଦ୍ରୋହ ! କୁନାଲ ବିଦ୍ରୋହ କରିବ ତାହାର ପିତା ବିରୁଦ୍ଧରେ ! ତାହାର ଶିକ୍ଷାଗୁରୁ ହୋଇ ତୁମର ମଧ୍ୟ ଏପରି ଅସମ୍ଭବ ଆଶଙ୍କା ?

ଗଣଭଟ୍ଟ—ଅସମ୍ଭବ ନୁହେ ମହାରାଜ ! ସୁସୀମ ତ ଭାଇ ବିରୁଦ୍ଧରେ ବିଦ୍ରୋହ କରିଥିଲେ ?

ଅଶୋକ—ସେଥିପାଇଁ ସୁସୀମ ଉଚିତ ଶିକ୍ଷା ପାଇଛନ୍ତି । ଭାଇ ହେଉ, ପୁଅ ହେଉ, ରାଜସିଂହାସନ ବିରୁଦ୍ଧରେ ଯେ ବିଦ୍ରୋହୀ

ହେଲା, ତାହାର ଚୈତନ୍ୟ ଉଦୟ କରିଦେବା ରାଜାର କର୍ତ୍ତବ୍ୟ ।

ରାଧାଗୁପ୍ତ—ଅବଶ୍ୟ ସୁସୀମଙ୍କର ଚୈତନ୍ୟ ଉଦୟ ହେବା ପୂର୍ବରୁ ଲୋପ ହୋଇଗଲା । କିନ୍ତୁ ରାଜପରିବାରର ଆଉମାନେ ତ ସେ ଘଟନାରୁ ଶିଖିବା ଉଚିତ ।

ଦ୍ୱାରପାଳ—(ପ୍ରବେଶ ଓ ଜାନୁପାତ କରି ) ମନ୍ତ୍ରୀ ରାଧାଗୁପ୍ତ ଶ୍ରୀଘ୍ରମୁକୁ ଆସିବାକୁ ଚାହାନ୍ତି ।

ଅଶୋକ—ଆସିବାକୁ କହ । ( ଦ୍ୱାରୀ ଚାଲିଯିବା ସଙ୍ଗେ ସଙ୍ଗେ ମନ୍ତ୍ରୀ ରାଧାଗୁପ୍ତ ପହଞ୍ଚିଲେ ଏବଂ ମୁଣ୍ଡ ନୁଆଇଁ ଅଭିବାଦନ କଲେ ପରକ୍ଷଣରେ ରାଧାଗୁପ୍ତଙ୍କୁ ଚାହିଁ ଭ୍ରୂକୁଞ୍ଚନ କଲେ । ବୟସରେ ସେ ଅଶୋକଙ୍କଠାରୁ ପ୍ରାୟ ପାଞ୍ଚ ବର୍ଷ ବଡ଼ ଏବଂ ରାଧାଗୁପ୍ତଙ୍କର ସମବୟସ୍କ । ଚାଳିଶ ପରେ ପାଞ୍ଚ ବର୍ଷ ପ୍ରଭେଦ, ତିନି ମାଇଲ ପରେ ଦୁଇଟା ସମାନ୍ତରାଳ ରେଲ୍‌ଲାଇନ୍ ଦେଖାଯିବା ପରି ଏକାସାଙ୍ଗରେ ମିଶିଯାଏ । ସୁତରାଂ ତିନି ଜଣଙ୍କର ବୟସ ପ୍ରାୟ ସମାନ ହେଲେହେଁ ସାମ୍ରାଜ୍ୟବାଦୀ ଅଶୋକଙ୍କ ନିକଟ ଅନ୍ୟ ଦୁଇଜଣ ଅବନତ ଓ ପ୍ରିୟ । ସେଥିପାଇଁ ଉଭୟେ ସମ୍ରାଟ୍‌ଙ୍କର ନିକଟତର ହେବାକୁ ପ୍ରତିଯୋଗୀ ଏବଂ ଜଣେ ଅନ୍ୟକୁ ସହିପାରେ ନାହିଁ । ଆଉ ଏକ କାରଣ, ଦୁଇଜଣଙ୍କ କ୍ଷମତା ଦୁଇଟା ବିପରୀତ ଦିଗରେ । ରାଧାଗୁପ୍ତ କର୍ମୀ, ସୁତରାଂ ତାଙ୍କ କାର୍ଯ୍ୟକ୍ଷେତ୍ରରେ ସେ ଯାହା ପାଇଛନ୍ତି ସେଥିପାଇଁ ଗର୍ବିତ; ରାଧାଗୁପ୍ତ ଚିନ୍ତା ଓ କୃଷ୍ଟି ଦିଗରେ ଯାହା ପାଇଛନ୍ତି ତାହା ଯୋଗରେ କର୍ମକୁ ଉପହାସ କରନ୍ତି । ଅନ୍ୟ କଥାରେ— ଜଣକର ଯାହା ନାହିଁ, ଆଉ କାହାରିଠାରେ ତାହା ଦେଖିବାକୁ ସେ କଷ୍ଟ ବୋଧକରେ —ନିଜର ଅଭାବ ଉପରେହିଁ ସେମାନଙ୍କର ଆଖି ଲାଗିଅଛି । )

ଅଶୋକ—ରାଧାଗୁପ୍ତ ! କୁନାଲଙ୍କର ଆଜ କିଛି ଖବର ମିଳିଛି ?

ରାଧାଗୁପ୍ତ—ରାଜକୁମାର ବୌଦ୍ଧଧର୍ମରେ ଦୀକ୍ଷିତ ହୋଇ ତକ୍ଷଶିଳା ତ୍ୟାଗ କରିଛନ୍ତି, ଏହି ପର୍ଯ୍ୟନ୍ତ ।

ଅଶୋକ—ବୌଦ୍ଧଧର୍ମ !

ରାଧାଗୁପ୍ତ—ହଁ ମହାରାଜ ! ହଠାତ୍ ତାଙ୍କର ଏପରି ମତ ପରିବର୍ତ୍ତନ ହେବାର କାରଣ ଜଣାପଡ଼ୁ ନାହିଁ ।

ଅଶୋକ—କୁନାଲକୁ ମୁଁ ମୂର୍ଖ ପରି ଭଲ ପାଏଁ । କିନ୍ତୁ ଦେଖୁଛି, ତାହାର ଉପଯୁକ୍ତ ଅନୁସନ୍ଧାନ ହୋଇନାହିଁ ।

ରାଧାଗୁପ୍ତ—( ଗଣଭଟ୍ଟଙ୍କ ପ୍ରତି ବିଦ୍ରୂପ ଦୃଷ୍ଟି ପକାଇ ବିନୀତ ଭାବରେ ) ରାଜକୁମାର କାହାରିକୁ କିଛି ଖବର ନ ଦେଇ ଅନ୍ତର୍ଦ୍ଧାନ ହୋଇଛନ୍ତି । କେବଳ ରାଜଜେମା ସଂଘମିତ୍ରାଙ୍କୁ ଖଣ୍ଡିଏ କଣ ପତ୍ର ଲେଖି ଯାଇଛନ୍ତି ।

ଅଶୋକ—( ବିସ୍ମୟ ଓ ବିରକ୍ତିରେ ) କାହିଁ ? ସଂଘମିତ୍ରାଠାରୁ ଏ ଖବର ତ ପାଇଲି ନାହିଁ ।

ରାଧାଗୁପ୍ତ—ରାଜଜେମା ଅଳ୍ପ ସମୟ ପୂର୍ବେ ପତ୍ର ପାଇଛନ୍ତି । ବର୍ତ୍ତମାନ ଆସି ତୁମ୍ଭରେ ଜଣାଇବେ ।

ଅଶୋକ—କିନ୍ତୁ କୁନାଲ ଯେ ପତ୍ର ଲେଖିଯାଇଛନ୍ତି, ତାହା ଆମର ଅନୁସନ୍ଧାନର ଫଳ କି ?

( ଉଦ୍‌ବିଗ୍ନ ହୋଇ ଉଠି ଧୀରେ ଧୀରେ ବୁଲିବାକୁ ଲାଗିଲେ । ଗଣଭଟ୍ଟ ଓ ରାଧାଗୁପ୍ତ ମଧ୍ୟ ତାଙ୍କ ପଛେ ପଛେ ଚାଲିଲେ )

ରାଧାଗୁପ୍ତ—(ନିଜର ଅପାରଗତା ଅପ୍ରମାଣ କରିବା ପାଇଁ) ମହାରାଜ ! କୁମାରଙ୍କର ଅନ୍ତର୍ଦ୍ଧାନବାର୍ତ୍ତା ରାଜ୍ୟମୟ ଘୋଷଣା କରାଯାଇଛି । ପ୍ରବଳ ଅନୁସନ୍ଧାନ ପାଇଁ ଆମର ଗୁପ୍ତଚର ବିଭାଗକୁ ହୁକୁମ

ହୋଇଅଛି । ଚେର, ଗ୍ରୀକ, ପାଣ୍ଡ୍ୟ ଓ କଳିଙ୍ଗ ପ୍ରଭୃତି ଜାଗା ମାନଙ୍କୁ ଦୂତ ପଠାଯାଇଛି ।

ଅଶୋକ—ଦୂତ ପଠାଯାଇଛି ! ଖାଲି ଦୂତ ପଠାଇ ଭାରତ ସାମ୍ରାଜ୍ୟ ଉଦ୍ଧାର ହେବ !

ରାଧାଗୁପ୍ତ—ରାଜକର୍ମଚାରୀମାନେ ସାମ୍ରାଜ୍ୟର କଲ୍ୟାଣ ପାଇଁ ଜୀବନ ପର୍ଯ୍ୟନ୍ତ ଦେବାକୁ ତିଆର ।

ଗଣଭଦ୍ର—ମୋହର କିନ୍ତୁ ମନେହୁଏ, ରାଜକର୍ମଚାରୀମାନଙ୍କ ଜୀବନ ବଡ଼ । ଭାରତକୁ ଯେତେ ଅଧୀଶ୍ୱର ଆସନ୍ତୁ, ସମାନ ଭାବରେ ସମସ୍ତଙ୍କ ସେବା କରିବାକୁ ତାଙ୍କର ଆପତ୍ତି ନାହିଁ । ଇନ୍ଦ୍ରଙ୍କ ଅପେକ୍ଷା ଶଚୀଙ୍କ ଆସନ ପରି ଭାରତ ସମ୍ରାଟ୍‌ଙ୍କ ଅପେକ୍ଷା ସେମାନଙ୍କ ଆସନ ଆହୁରି ଦୃଢ଼ ।

ରାଧାଗୁପ୍ତ—( ତୀବ୍ରଭାବରେ ) ଗଣଭଦ୍ର ! ସାମ୍ରାଜ୍ୟର ହିତ ପାଇଁ ସେମାନେ ଆପଣାର ସର୍ବସ୍ୱ ବିକି ଦେଇଛନ୍ତି—ପାଦଠାରୁ ମସ୍ତକ ପର୍ଯ୍ୟନ୍ତ ।

ଗଣଭଦ୍ର—( ଧୀର ସ୍ୱରରେ ) ରାଧାଗୁପ୍ତ, ଏଥିରେ କିନ୍ତୁ ଦୁଇଟି ବିଷୟରେ ସଂଶୟ ରହିଲା—ପ୍ରଥମ କଥା କାହାର ହିତ ପାଇଁ ସେମାନେ ସର୍ବସ୍ୱ ବିକିଛନ୍ତି । ଆଉ ଦ୍ୱିତୀୟରେ ତାଙ୍କର ପାଦଠାରୁ ଗଳା ପର୍ଯ୍ୟନ୍ତ ଯାଇପାରେ; କିନ୍ତୁ ବାକି ଅଂଶଟା ଅଛି ତ ?

ରାଧାଗୁପ୍ତ—( ଉତ୍ତେଜିତ ହୋଇ ) ରାଜକର୍ମଚାରୀମାନଙ୍କ ନିନ୍ଦା, ରାଜାଙ୍କ ନିନ୍ଦା ଏବଂ ସମ୍ରାଟ୍‌ଙ୍କ ନିନ୍ଦା ସମସ୍ତ ସାମ୍ରାଜ୍ୟର ନିନ୍ଦା, ଏ କଥା ଜାଣିକି ଗଣଭଦ୍ର ?

ଗଣଭଦ୍ର—ଅର୍ଥାତ୍ ସେ ନିନ୍ଦାର କୌଣସି ମୂଲ୍ୟ ନାହିଁ । କାରଣ ସାମ୍ରାଜ୍ୟର କେହି ପ୍ରଜା ପରି ରାଜକର୍ମଚାରୀଙ୍କର ନିନ୍ଦା କରେ

ତେବେ ତାହା ବୁଲି ବୁଲି ଆସି ଶେଷରେ ତାହାର ନିଜ ନିନ୍ଦା ହେବ ଏବଂ ଫଳତଃ ନିଜକୁ ନିନ୍ଦା କଲେ ମଧ୍ୟ ଶେଷରେ ଯାଇ କର୍ମକର୍ତ୍ତାଙ୍କ ଉପରେ ପଡ଼ିବ !

ଅଶୋକ—(ସେମାନଙ୍କ କଥାକୁ ଭ୍ରୂକ୍ଷେପ ନ କରି ) ମଗଧ ପ୍ରଜାମାନଙ୍କ ଭିତରେ ରାଜାଙ୍କର ନିନ୍ଦା କିପରି ମନ୍ତ୍ରୀ ?

ରାଧାଗୁପ୍ତ—(ଗଣଭଟ୍ଟଙ୍କ କଥା ପ୍ରତି ଅଶୋକଙ୍କର ଅମନୋଯୋଗ ଦେଖି ଉତ୍ସାହରେ, ସେଥିପାଇଁ ସମସ୍ତ ସାମ୍ରାଜ୍ୟରେ ଆଇନର ଜାଲ ଛନ୍ଦାଯାଇଅଛି । ଯେ କେହି ତାହା ଭିତରକୁ ଆସୁ, ନିଜର ବିନା ଚେଷ୍ଟାରେ ରାଜକଚେରିରେ ହାଜର ହେବ ।

ଗଣଭଟ୍ଟ—(ନିଜର ଉପସ୍ଥିତି ଜଣାଇବା ପାଇଁ) ଆଉ ସେ ଜାଲ ଯେମିତି ମଣିଷର ଚିବା ବାଟରେ ପଡ଼େ, ନହେଲେ ଜଣେ ସୁଦ୍ଧା ଧରାପଡ଼ିବ ନାହିଁ ।

ରାଧାଗୁପ୍ତ—ସେଥିପାଇଁ ତୁମେ ନିଶ୍ଚିନ୍ତ ରହିପାର ଗଣଭଟ୍ଟ ! କାରଣ ତୁମର ଚିବା ବାଟ ନିରାପଦ ।

ଅଶୋକ—(ପୂର୍ବ ପରି ରାଧାଗୁପ୍ତଙ୍କୁ ଲକ୍ଷ୍ୟ) ରାଜଦ୍ରୋହୀମାନଙ୍କର ଦଣ୍ଡ ?

ରାଧାଗୁପ୍ତ—ଜିହ୍ୱାଚ୍ଛେଦ—ଯେଉଁ ଜିହ୍ୱା ରାଜନିନ୍ଦା ଉଚ୍ଚାରଣ କରିବ, ଚିରଦିନ ତାକୁ ମୂକ ହେବାକୁ ପଡ଼ିବ ।

ଗଣଭଟ୍ଟ—ବାଃ, ବିଚିତ୍ର ଉଦ୍ଭାବନ ! ଏଥିରେ ବିବେକ ଯେମିତି ଅଛି, କବିତ୍ୱ ମଧ୍ୟ ସେହିପରି !

ଅଶୋକ—ରାଧାଗୁପ୍ତ ! ସେ ଆଦେଶ ବର୍ତ୍ତମାନ ରଦ୍ କରିବାକୁ ହେବ ।

ରାଧାଗୁପ୍ତ—( ନିଜର ପରାଜୟରେ ବ୍ୟଥିତ ହୋଇ ) କିନ୍ତୁ ରାଜଦ୍ରୋହୀର ତ ଦଣ୍ଡ ଆବଶ୍ୟକ ।

ଅଶୋକ—(ଦୃଢ଼ ସ୍ୱରରେ) ଶିରଚ୍ଛେଦ । ରାଜ୍ୟସାକ ପ୍ରଚାର କର, ଯାହା ମୁର୍ଦ୍ଧନ୍ୟ ରାଜା କମ୍ବା ରାଜ୍ୟ-ଶାସନର ନିନ୍ଦା ଶୁଣାଯାଏ, ତାହାର ମୁଣ୍ଡକାଟ ହେବ ଏବଂ ଭାରତ-ସମ୍ରାଟ୍ ସେଲୋକଙ୍କୁ ମୁଣ୍ଡଦାନ କରିଦେବା ପାଇଁ କୁଣ୍ଠିତ ହେବେ ନାହିଁ ।

ଗଣଭଞ୍ଜ—( ରାଧାଗୁପ୍ତଙ୍କୁ କୌତୁକ ଦୃଷ୍ଟିରେ ଚାହିଁ ) ତା'ହେଲେ କେବଳ ବାକି ରହିବି ରାଜକର୍ମଚାରୀଙ୍କ ମୁଣ୍ଡଗୁଡ଼ିକ, ଯହିଁରେ ତାଙ୍କର ଆବଶ୍ୟକ ଅତି ଅଳ୍ପ । ସେଥିପାଇଁ ପ୍ରଥମେ ଅନ୍ତତଃ ସେହିମାନଙ୍କ ମୁଣ୍ଡରେ ଖଡ଼୍ଗର ଧାର ପରୀକ୍ଷା କଲେ ଭଲ ହୁଅନ୍ତା । ଆଜି ସେଥିରେ ଆମ ସାମ୍ରାଜ୍ୟର ମଧ୍ୟ କିଛି କ୍ଷତି ନାହିଁ । କାରଣ ସେମାନେ ଯେଉଁ କାମ କରନ୍ତି, ବିନା ମୁଣ୍ଡରେ ମଧ୍ୟ ତାହା କରାଯାଇପାରେ, କେବଳ ଦୁଇଟି ଗୋଡ଼ ଓ ଦୁଇଟି ହାତ ଥିଲେହିଁ ଚଳିବ ।

ରାଧାଗୁପ୍ତ—(ବିଦ୍ରୂପ କରି) ଆଜି ତୁମର ଖାଲି ମୁଣ୍ଡଟି ଦରକାର; ସୁତରାଂ ବାକି ଅଂଶଟିରେ ଖଡ଼୍ଗର ଧାର ପରୀକ୍ଷା କଲେ କ୍ଷତି ନାହିଁ । ( ଅଶୋକଙ୍କ ପ୍ରତି ) ମହାରାଜ ! ଯେଉଁମାନେ ଆଜି ପର୍ଯ୍ୟନ୍ତ ରାଜଦ୍ରୋହ ପାଇଁ ଧରାଯାଇଛନ୍ତି, ସେମାନଙ୍କୁ ଅବଶ୍ୟ ଆଗରୁ ଯେପରି ଆଦେଶ ଅଛି ସେହିପରି ଦଣ୍ଡିତ ହେବାକୁ ପଡ଼ିବ ।

ଅଶୋକ— ସେମାନଙ୍କର ସଂଖ୍ୟା ? ( ଧୀରେ ଆସି ଆସନରେ ବସିଲେ ଏବଂ ଅନ୍ୟ ଦୁହେଁ ମଧ୍ୟ ନିଜ ନିଜର ଆସନ ନେଲେ । )

ରାଧାଗୁପ୍ତ—ତିନି ହଜାର ସାତଶ ତେପନ ।

ଅଶୋକ —ଏତେ ବେଶି ?

ଗଣଭଞ୍ଜ—ସମସ୍ତେ ମନୁଷ୍ୟ ତ ?

ଅଶୋକ—ଗଣଭଦ୍ର ! ତୁମର ପରିହାସ ମଧ୍ୟ ଉପଦ୍ରବ ହୋଇ ଉଠିଛି ।

ରାଧାଗୁପ୍ତ—(ଅବହେଳିତ ଭାବରେ) ଅବଶ୍ୟ ଆମର ଡନ୍ଦ୍ର କର୍ମଚାରୀ କୋଟୁଆଲମାନେ ଅତି ବେଶୀ ତତ୍ପରତା ଦେଖାଇବାକୁ ଯାଇ କେତେଟା ପକ୍ଷୀଙ୍କୁ ମଧ୍ୟ ଧରି ଆଣିଥିଲେ । (ବିଜୟ ଉଲ୍ଲାସରେ ଗଣଭଦ୍ରଙ୍କର ମୃଦୁହାସ୍ୟ )

ଅଶୋକ—( ନମ୍ର ସ୍ୱରରେ ପକ୍ଷୀ ) !

ରାଧାଗୁପ୍ତ—କେହି କେହି ମଗଧବାସୀ ଶୁଆ ସାରୀଙ୍କୁ ରାଜଦ୍ରୋହ କଥା ଶିଖାଇଛନ୍ତି । ଉଭୟ ଗୁରୁ ଓ ଶିଷ୍ୟଙ୍କୁ ଆମର କୋଟୁଆଲମାନେ ଧରି ଆଣନ୍ତି, ପ୍ରମାଣ ଦେଖାଇବା ଉଦ୍ଦେଶ୍ୟରେ । ପକ୍ଷୀଗୁଡ଼ାଙ୍କୁ ଅବଶ୍ୟ ଛାଡ଼ିଦିଆଯାଏ ।

ଗଣଭଦ୍ର—କିନ୍ତୁ ସେମାନେ ମନୁଷ୍ୟ ଅପେକ୍ଷା ବେଶି ଭୟଙ୍କର— ଆକାଶରେ ମଧ୍ୟ ରାଜଦ୍ରୋହ ପ୍ରଚାର କରିବେ ।

ଅଶୋକ—ପ୍ରମାଣ ଦେବାପାଇଁ ପକ୍ଷୀଗୁଡ଼ାଙ୍କୁ ମଧ୍ୟ ବନ୍ଦ କରିବା ଦରକାର ।

ରାଧାଗୁପ୍ତ—ତଳ ଦରର କର୍ମଚାରୀଙ୍କର ଯେମିତି ବୁଦ୍ଧି—ଆଜି ଦୁଇଜଣ କୋଟୁଆଲ କଳିଙ୍ଗର ରାଜଦୂତଙ୍କୁ ମଧ୍ୟ ବନ୍ଦୀ କରି ଆଣିଛନ୍ତି ।

ଗଣଭଦ୍ର—କଳିଙ୍ଗର ରାଜଦୂତ ! ହଠାତ୍ କଣ ମନେକରି

ରାଧାଗୁପ୍ତ—(ବିଦ୍ରୂପର ହାସ୍ୟ ହସି) ମାନନୀୟ ଅଭ୍ୟାଗତଙ୍କୁ ତାହା ପଚାରିବା ଭଦ୍ରତାର ବହିର୍ଭୂତ ।

ଗଣଭଦ୍ର—( ସେହି ହାସ୍ୟ ଫେରାଇ ଦେଇ ) ସତେ ? ମୋହର ତେବେ ଭୁଲ ହୋଇଛି—ତୁମମାନଙ୍କ ଭିତରେ ତା'ହେଲେ ଭଦ୍ରଲୋକ ବି ଅଛନ୍ତି !

ଅଶୋକ— କଳିଙ୍ଗ ରାଜଦୂତଙ୍କୁ ବନ୍ଦୀ କରିବା ଅତି ଅନ୍ୟାୟ ହୋଇଛି, ରାଧାଗୁପ୍ତ !

ରାଧାଗୁପ୍ତ—( ନିଜ ଉପରୁ ଦାୟିତ୍ୱ ଖସାଇବା ପାଇଁ ) ସେଥିପାଇଁ ସେହି ମୂର୍ଖ କୋତୁଆଳ ଦୁଇଜଣ ଦାୟୀ । ବନ୍ଦୀ କରି ଆଣିଲେ ମଧ୍ୟ ଦୁହିଁଙ୍କ ଭିତରୁ କେହି ଜଣେ ଠିକ୍ କଥା କହୁନାହିଁ । ସଙ୍ଗେ ସଙ୍ଗେ ସେ ଦୁଇଟାଙ୍କୁ କାମରୁ ବାହାର କରି ଦିଆଯାଇଛି ।

ଅଶୋକ—ଉତ୍ତମ । ସେମାନଙ୍କ ଜାଗାରେ ଆଉ ଦୁଇ ଜଣ ନିଯୁକ୍ତ କର ।

ଗଣଭଣ୍ଡ—ରାଧାଗୁପ୍ତ ! ଦୁଇଜଣଙ୍କୁ ବାହାର କରି ଦେଇ ସେଥି-ଭିତରୁ ଜଣେ କାହାକୁ ଆଜି ମନ୍ତ୍ରୀ କରିଦିଅ; କାଲିଠାରୁ ଦେଖିବ, ସେ ଯାହା କହିବ ସବୁ ଠିକ୍—ଆଉ ତୁମେ ପଦ ଦୟା କରି ତାହାର ସ୍ଥାନ ଯାଇ ପୂରଣ କର, କାଲିଠାରୁ ଯାହା କହିବ, ସବୁ ଭୁଲ ।

ଦ୍ୱାରପାଳ—(ପ୍ରବେଶ କରି ଜାନୁପାତପୂର୍ବକ) ଦେବ ସଂଘମିତ୍ରା • ଶ୍ରୀଚରଣକୁ ଆସିବାକୁ ଚାହାନ୍ତି ।

ଅଶୋକ—ଆସିବାକୁ କହ (ଦ୍ୱାରୀର ପ୍ରସ୍ଥାନ)

ରାଧାଗୁପ୍ତ—(ଆସନ ଛାଡ଼ି ବ୍ୟଗ୍ରଭାବରେ) ମୁଁ ମଧ୍ୟ ଉଠେଁ, କଳିଙ୍ଗ ରାଜଦୂତଙ୍କର ଅଭ୍ୟର୍ଥନା ଦେଖି ତାଙ୍କୁ ଘେନିଆସେଁ ।

ଗଣଭଣ୍ଡ—ଅଃ, ବସନା—ଯେତେ ରାଧାଗୁପ୍ତ ଚେଷ୍ଟା କଲେ ଭଲା ଏ ପୃଥିବୀ ତାହାର କକ୍ଷରୁ ତଳେ ହେଲେ ଘୁଞ୍ଚିବ?

ରାଧାଗୁପ୍ତ—(ବିରକ୍ତ ସ୍ୱରରେ) ଗଣଭଣ୍ଡ ! ଖୁସିଗପ କରିବାର ଭାଗ୍ୟ ଅଳ୍ପ ଲୋକଙ୍କର ଅଛି ।

ଗଣଭଟ୍ଟ—(ମୃଦୁ ହସି) ଆଜି ସେହି ଅଳ୍ପ ଲୋକଙ୍କ ପାଇଁ ତୁମେ ବହୁଲୋକ ହନନରତ ଖଟି ଶାନ୍ତ ପାଅ ନାହିଁ ।

ରାଧାଗୁପ୍ତ—ହୋଇପାରେ, ସେଥିପାଇଁ ସେମାନେ ଆମ ପାଖରେ ଋଣୀ ! ( ଦ୍ୱାରଦେଶକୁ ଚାହିଁ ) ଏହି ତ ରାଜକେମା !

( ପ୍ରସ୍ଥାନ )

[ ସଂଘମିତ୍ରାଙ୍କର ପ୍ରବେଶ । ତୀକ୍ଷ୍ଣନାସା ଓ ଆୟତ-ଚକ୍ଷୁରେ ଆର୍ଯ୍ୟ ଲଳନାର ଧର୍ମିମୟ ସୁଷମା । ବୟସ ୧୮, ଯୌବନର ପ୍ରଥମ ପାହାଚରେ ପାଦ ରଖିଛନ୍ତି । ସାଧାରଣ ରାଜକୁମାରୀମାନଙ୍କ ପରି ଦେହରେ ଆଭରଣର ଆଡ଼ମ୍ବର ନାହିଁ । ସେଥିରେ ତାଙ୍କର ବେଶବିନ୍ୟାସରେ ଅବହେଳା ବୋଲି କୁହାଯାଇ ନ ପାରେ । ନିଜର ରୂପ ଓ ବୟସ ପ୍ରତି ସେ ସମ୍ପୂର୍ଣ୍ଣ ସଚେତନ ଥିବାହିଁ ଏହାର କାରଣ—ସାଧାରଣ ବେଶଭୂଷା ଯେନ ରୂପ ଓ ରୁଚିର ଅସାଧାରଣତ୍ୱ ଦେଖାଇବାହିଁ ତାଙ୍କର ଉଦ୍ଦେଶ୍ୟ । ସୁତରାଂ ନାରୀ-ପ୍ରକୃତିରୁ ସେ ବଞ୍ଚିତା ନୁହନ୍ତି; କିନ୍ତୁ ତାଙ୍କୁ ଅନ୍ଧ-ନାରୀ କହିଲେ ଭୁଲ ହେବ । ସେ ଘୋଡ଼ା ଉପରେ ବସି ସୈନ୍ୟଚାଳନା କରନ୍ତି, ସନ୍ତରଣ କରି ନଦୀ ପାରହୁଅନ୍ତି, ଧନୁହାତରେ ରଣଭୂଇଁରେ ପୁରୁଷ ଉପରେ ଶର ମାରନ୍ତି; ଅଥଚ ନିଜର ରୂପ ଓ ବୟସ ସଙ୍ଗେ ତାଙ୍କର ପରିଚୟ ଏପରି ଘନିଷ୍ଠ ଯେ, ଶତ୍ରୁ ପକ୍ଷର କୌଣସି ମନୋମତ ଯୋଦ୍ଧା ଦେଖିବାକୁ ପାଇଲେ ତାଙ୍କ ସହିତ ରଣ ବଦଳରେ ପ୍ରଣୟରେ ମଧ୍ୟ ଆବଦ୍ଧ ହୋଇ ପାରନ୍ତି ।

ପିତା ଏବଂ ଗୁରୁ ଗଣଭଟ୍ଟଙ୍କୁ ଅଭିବାଦନ କରି ସଂଘମିତ୍ରା, ଅଶୋକଙ୍କ ନିକଟରେ ବସିଲେ । ]

ସଙ୍ଘମିତ୍ରା—(ବସ୍ତ୍ରଘୋଡାଇ ଶୃଙ୍ଖଳାରେ) ମହାରାଜ ! ଚଣ୍ଡଗିରି ମତେ ଅପମାନ କରିଛି ।

ଗଣଭଦ୍ର—ସାମାନ୍ୟ ଘାତକ ଚଣ୍ଡଗିରି !

ସଙ୍ଘମିତ୍ରା—ଚଣ୍ଡଗିରି ମୋର ଫୁଲବଗିଚାଟି ପୋଡ଼ି ପାଉଁଶ କରି ଦେଇଛି ।

ଅଶୋକ—ସେଥିପାଇଁ ତାର ବିଚାର କରାଯିବ ।

ସଙ୍ଘମିତ୍ରା—(ଅଶୋକଙ୍କର ଗାମ୍ଭୀର୍ଯ୍ୟ ଭାଙ୍ଗିବା ପାଇଁ) ମୋହର ସଖୀ ମହାରକା ବାଧା ଦେବାରୁ ତାଙ୍କ କଥା ନ ମାନି କହିଲା, ମହାରାଜାଙ୍କର ହୁକୁମ । ଆଉ କେତେ ଅପମାନ କରି ମଧ୍ୟ କହିଲା ।

ଗଣଭଦ୍ର— (ବିସ୍ମିତ ହୋଇ) ମହାରାଜ କଣ ଆଦେଶ କରିଥିଲେ କେମାଙ୍କର ଫୁଲବଗିଚା ପୋଡ଼ିବାପାଇଁ ?

ସଙ୍ଘମିତ୍ରା—ଯେଉଁ ଅଭାଗିନୀ ଝିଅଗୁଡ଼ିକ ବଗିଚାର ଅଶୋକ ଗଛରୁ ଡାଳପତ୍ର ଭାଙ୍ଗିଥିଲେ, ସେହିମାନଙ୍କୁ ପୋଡ଼ିବାପାଇଁ ରାଜାଙ୍କର ଆଦେଶ ଥିଲା । ଚଣ୍ଡଗିରି ସେମାନଙ୍କୁ ଆଣି ମୋହର ବଗିଚାରେ ପୋଡ଼ିଛି, ଆଉ ସେଥିରେ ମୋର ଫୁଲଗଛଗୁଡ଼ିକ ସମୂଳେ ନଷ୍ଟ ହୋଇଛି ।

ଗଣଭଦ୍ର—ସଙ୍ଘମିତ୍ରାକୁ ରହସ୍ୟପୂର୍ଣ୍ଣ ଦୃଷ୍ଟିରେ ଚାହିଁ ଚଣ୍ଡଗିରିର ଅପରାଧ ଗୁରୁତର—ତାକୁ ହୁକୁମ ଥିଲା, ରମଣୀମାନଙ୍କ ଜୀବନ ନଷ୍ଟ କରିବାକୁ, କେମାଙ୍କର ଫୁଲବଗିଚା ନୁହେ ।

ଅଶୋକ—( ସାନ୍ତ୍ୱନା ଦେବା ଛଳରେ ) କେମାଙ୍କ ପାଇଁ ନୂଆ ବଗିଚା ଗଢ଼ାଯିବ ।

ଗଣଭଦ୍ର—(କୌତୁକ କରି) ଯଥାର୍ଥ କଥା—ଆଉ ଗୋଟିଏ ବଗିଚା ସହଜରେ ତିଆରି ହୋଇପାରେ; କିନ୍ତୁ ଯେଉଁମାନଙ୍କୁ ଥରେ

ଦଗ୍ଧ କରାଯାଇଛି, ସେମାନଙ୍କୁ ତ ଆଉ ଥରେ କରାଯାଇ ପାରିବ ନାହିଁ ! ସୁତରାଂ ସେମାନଙ୍କ ପ୍ରତି ଜେମାଙ୍କର ଏପରି ନିଷ୍ଠୁର ହେବା ଠିକ୍ ନୁହେଁ ।

ସଂଘମିତ୍ରା—(ଉତ୍ତ୍ୟକ୍ତ ହୋଇ) ଆପଣ ଏ ସବୁ କଣ କହୁଚନ୍ତି ଗୁରୁଦେବ ! ମୋହର ବଗିଚାରେହିଁ ସେମାନଙ୍କୁ ପୋଡ଼ାଯିବ !

ଗଣଭଟ୍ଟ—ସେଥିପାଇଁ ସେମାନେ ଅବଶ୍ୟ ଜେମାଙ୍କର କ୍ଷମାର ପାତ୍ର । କିନ୍ତୁ ଚଣ୍ଡଗିରି···

ଅଶୋକ—ଚଣ୍ଡଗିରିକୁ ଆଦେଶ ଥିଲା ଏ କାମଟା ଗୋପନରେ କରିବାପାଇଁ ।

ସଂଘମିତ୍ରା— (ଅଭିମାନର ସ୍ୱରରେ ) ଗୋପନରେ !

ଅଶୋକ—ହଁ, ଯେଉଁ ନାରୀ ଖେଳରେ ମତ୍ତ ହୋଇ ରାଜାଙ୍କର ନାମଧେୟ ଗଛକୁ ଏପରି ଶ୍ରୀହୀନ କରିପାରେ, ତାହାର ଚରିତ ଅତି ଜଘନ୍ୟ ।

ସଂଘମିତ୍ରା—କିନ୍ତୁ ସେମାନଙ୍କର ଦଣ୍ଡ ତ ଅଳ୍ପ ଜଘନ୍ୟ ନୁହେଁ !

ଗଣଭଟ୍ଟ—ଯେକୌଣସି ଦଣ୍ଡର ବିଶେଷଣ ଜଘନ୍ୟ ଛଡ଼ା ଆଉ କିଛି ହୋଇପାରେ ନାହିଁ—ତାହାହେଲେ ତାକୁ ଦଣ୍ଡ ନ କହି ଆଉ କିଛି ନାମ ଦେବାକୁ ହେବ ।

ଅଶୋକ—କିନ୍ତୁ ଜେମା, କୁନାଲଙ୍କଠାରୁ କଣ ଖବର ପାଇଛ—କାହିଁ କହିଲ ନାହିଁ ?

ସଂଘମିତ୍ରା— (ସ୍ମରଣ କରି) ଚଣ୍ଡଗିରିର ଆଚରଣରେ ଉତ୍ତ୍ୟକ୍ତ ହୋଇ ମୁଁ ସେ କଥା ଭୁଲିଯାଇଥିଲି । ଭାଇ ପତ୍ର ଦେଇଚନ୍ତି, ତାଙ୍କ ପାଇଁ ଅନୁସନ୍ଧାନ କରିବା ନିଷ୍ଫଳ ଏବଂ ସେ ମଗଧର ସିଂହାସନ ଅପେକ୍ଷା ଅନେକ ବଡ଼ ଏକ ସିଂହାସନରୁ ଆଦେଶ ପାଇ ତକ୍ଷଶିଳା ଛାଡ଼ି ଯାଇଛନ୍ତି—ଯଥା ସମୟରେ ନିଜେ ଆସି

ପିତାଙ୍କର ସାକ୍ଷାତ୍ କରିବେ । ( ଦଣ୍ଡାୟମାନ ହୋଇ) କିନ୍ତୁ ଚଣ୍ଡଗିରିର ବ୍ୟବହାର ମତେ ଏତେଦୂର ଉତ୍ତ୍ୟକ୍ତ କରିଛି ଯେ ମୁଁ ଭାଇ କୁନାଳଙ୍କ ପାଇଁ ଦୁଃଖ କରି ପାରୁନାହିଁ ।

ଅଶୋକ—ଆଚ୍ଛା, ଯାଅ ଜେମା ! ଚଣ୍ଡଗିରିର ବିଚାର ଅବଶ୍ୟ କରାଯିବ । (ସଂଘମିତ୍ରାଙ୍କ ପ୍ରସ୍ଥାନ ପରେ ଗଣଭଟ୍ଟଙ୍କୁ ଚାହିଁ) ତୁମ ଉପରେ ଏମାନଙ୍କର ଶିକ୍ଷାଭାର ଦେଇ କି ଉପକାର ହୋଇଛି—ବୁଝି ପାରୁନାହିଁ।

ଗଣଭଟ୍ଟ—(ବିନୀତ ହାସ୍ୟରେ) ମହାରାଜ ! ଶିକ୍ଷା ଯେଉଁମାନେ ପାନ୍ତି ସେହିମାନଙ୍କର ହିଁ ଉପକାର ହୁଏ, ପରିବାରର ଆଉ ସମସ୍ତଙ୍କର ତ ନୁହେଁ !

ଅଶୋକ—ପରିହାସ ନୁହେଁ ଗଣଭଟ୍ଟ ! ସମ୍ବାଦ ନ ଦେଇ କୁନାଳ ରାଜ୍ୟ ଛାଡ଼ି ବନବାସୀ । ସଂଘମିତ୍ରା ମୋ ଶାସନର ନିନ୍ଦା କରିବାକୁ ମଧ୍ୟ କୁଣ୍ଠିତ ନୁହେଁ । ତୁମେ ଓ ତୁମର ଶିକ୍ଷା ଏଥିପାଇଁ ଦାୟୀ ନୁହେଁ କି ? ସମଗ୍ର ଭାରତ ସାମ୍ରାଜ୍ୟ ବିଦ୍ରୋହୀ ହେଲେ ମଗଧ ସମ୍ରାଟ୍ ତାକୁ ଫୁଙ୍କି ନିଭାଇ ଦେଇପାରେ; କିନ୍ତୁ ପରିବାର ଯଦି ଶାନ୍ତିଶୂନ୍ୟ ହୁଏ, ପୁତ୍ର ଅବାଧ ହୁଏ, ନିଜ କନ୍ୟାକୁ ସନ୍ତାନ ବୋଲି ଦାବି କରିବାପାଇଁ ଯେବେ ସାହସ ନ ରହେ···

ଗଣଭଟ୍ଟ—ତାହାହେଲେ ଅନୁମତି ନେଇ କହିବି, ମଗଧ ସମ୍ରାଟଙ୍କର ନିଜ ଶିକ୍ଷାରେ ତ୍ରୁଟି ରହିଯାଇଛି ।

ଅଶୋକ—(କ୍ରୋଧ ରୁଦ୍ଧ କରି ) ମଗଧ ସମ୍ରାଟ୍‌ର ତ୍ରୁଟି ଦେଖାଇବା ପାଇଁ ତୁମକୁ କେବଳ ବନ୍ଧୁ ବୋଲି ସ୍ୱାତନ୍ତ୍ର୍ୟ ମିଳିଛି । ଆଜି ତୁମେ ତାକୁ ଏପରି ବ୍ୟବହାର କରିଛ ଯେ, ତାହାର ଫଳ ହୋଇଛି ଦୁଃଖ ଓ ଅଶାନ୍ତି । ଭାବିବ ନାହିଁ, ବନ୍ଧୁତା ପାଇଁ ଭାରତ ସମ୍ରାଟ୍ ତାହାର ସର୍ବସ୍ୱ ପଣ କରିବ । ସମୟରେ ସେ

ତାହାର ନିଜ ହାତକୁ ମଧ୍ୟ ବିଶ୍ୱାସ କରେ ନାହିଁ, ଏହା କଣ ଦେଖି ନାହିଁ ? ( ପୂର୍ବପରି ଆସନ ଗ୍ରହଣ ପଦଗ୍ରହଣ କଲେ ଏବଂ ଗଣଭଦ୍ର ତାଙ୍କର ଅନୁବର୍ତ୍ତୀ ହେଲେ । )

ଗଣଭଦ୍ର—(ଅଶୋକଙ୍କର ଏପରି ସାମୟିକ ଭାବ ପରିବର୍ତ୍ତନ ଦେଖିବା ତାଙ୍କର ଅଭ୍ୟାସଗତ ଏବଂ ସେଥିରୁ ଉଦ୍ଧାର ପାଇବାର କୌଶଳରେ ସେ ସୁନିପୁଣ । ସୁତରାଂ ଅବିଚଳିତ ହୋଇ) ଗଣଭଦ୍ରର ସର୍ବସ୍ୱ ତାହାର ଏହି ଦେହ ଏବଂ ସେ ତାହା ଅନେକ ଆଗରୁ ଶ୍ରୀଗୁରୁଙ୍କରେ ଉତ୍ସର୍ଗ କରିଦେଇଛି ।

ଅଶୋକ—ତୋଷାମଦ କରି ତୁମେ ବାଘକୁ ଭୁଲାଇ ପାରିବ ?

ଗଣଭଦ୍ର—(ବିଶ୍ରାମ ନେଇ) ନା ମହାରାଜ, ତୋଷାମଦ ନୁହେଁ । ଯଥାର୍ଥ କହିବାକୁ ଗଲେ ଶ୍ରୀଗୁରୁଙ୍କ ଆଦେଶ ମାନି ମୁଁ ଶିକ୍ଷକ-ରୂପେ ନିଯୁକ୍ତ ହୋଇଛି ମାତ୍ର; କିନ୍ତୁ କୌଣସି ଶିକ୍ଷା ଦେଇ ନାହିଁ ।

ଅଶୋକ—ନା, ଦେଇ ନାହିଁ ? ନିଜ ଉପରୁ ଦାୟିତ୍ୱ ଖସାଇବାର ଛଳନା ।

ଗଣଭଦ୍ର—(ଅଶୋକଙ୍କର ସ୍ୱର ପରିବର୍ତ୍ତନ ଦେଖି ଉତ୍ସାହ ପାଇ) ମହାରାଜଙ୍କ ନିକଟରେ ମୋହର ଯଥାସର୍ବସ୍ୱ ଏହି ଦେହ-ଗୋଟାକୁ ପଣ କରି ଦେଇଅଛି । ସେଥିପାଇଁ ବିଶ୍ୱାସ ନ କଲେ ମୋର ଆଉ କିଛି ପଣ ନାହିଁ ।

ଅଶୋକ—( ଅନ୍ୟ ଦିଗରୁ ଆକ୍ରମଣ କରି ) ତାହାହେଲେ ଏ ସବୁ ତୁମର ଶିକ୍ଷା ନ ଦେବାର ଫଳ—ତେବେ ତୁମେ ରାଜାଦେଶକୁ ଅମାନ୍ୟ କରିଛ ।

ଗଣଭଦ୍ର—( ଆଉ ଏକ ଗର୍ତ୍ତରୁ ଉଦ୍ଧାର ପାଇବା ଚେଷ୍ଟାରେ ) ରାଜାଦେଶକୁ ଅମାନ୍ୟ କରି ନାହିଁ ମହାରାଜ ! କିନ୍ତୁ ଶିକ୍ଷା

ଦେବାକୁ ଯାଇ ଦେଖିଲି, ରାଜସନ୍ତାନମାନଙ୍କ ପାଖରେ ଶିକ୍ଷକତା କରିବ କିଏ ? ବନ୍ଧୁତାରେ ଆବଦ୍ଧ ହୋଇପଡ଼ିଛି ଏବଂ ସେହି ସୂତ୍ରରେ ବୁଝିଲି ଯେ, ଗୁରୁ ନ ହେବାର ସବୁ- ଗୁଡ଼ିକ ସଦ୍‌ଗୁଣ ମୋହର ଅଛି । ଆଜି ମଧ୍ୟ ସେମାନେ ମୋଠାରୁ କିଣ ଶିଖିଲେ କେଜାଣି, ମୁଁ ସେମାନଙ୍କଠାରୁ ଏତିକି ଶିଖିଲି ଯେ···

(ବ୍ୟଗ୍ରତା ଦମନ କରି ଅଶୋକ ପୁଣି ଆସନରେ ବସିଲେ )

ଅଶୋକ— (ପ୍ରକୃତିସ୍ଥ ହୋଇ) ଗଣଭଟ୍ଟ ! ତୁମର ମନେ ରଖିବା ଉଚିତ ଥିଲି, ସେଠାକୁ ତୁମେ ଶିଖାଇବାକୁ ଯାଇଥିଲ, ଶିଖିବାକୁ ନୁହେଁ ।

ଗଣଭଟ୍ଟ—ଯେତେ ପଣ୍ଡିତ ହେଲେହେଁ ଯେ କେହି ଲୋକ ଖୁବ୍ ବଡ଼ ନିଜକୁ ଶିକ୍ଷା ଦେଇ ପାରେ ।

ଅଶୋକ—ତଥାପି ସେମାନେ ତ ତୁମକୁ ଗୁରୁ ବୋଲି ସ୍ୱୀକାର କରନ୍ତି, ଭକ୍ତି ବି କରନ୍ତି ।

ଗଣଭଟ୍ଟ—(ବିଜୟୀର ଉତ୍ସାହରେ ) ମହାରାଜ ! ବାସ୍ତବିକ ଯଦି ଏପରି ଦୁର୍ଘଟଣା ଘଟିଥାଏ, ତେବେ ତାହା ମୋର ଅଗୋଚରରେ ହୋଇଛି ଏବଂ ସେଥିପାଇଁ ମୁଁ କ୍ଷମାର ପାତ୍ର । କାରଣ ନିଜକୁହିଁ ମୁଁ ଏତେଦୂର ଭକ୍ତି କରେ ଯେ, ସେଥିଭିତରେ ଆଉ କାହାରି ଭକ୍ତି ପରୀକ୍ଷା କରିବାକୁ ଅବକାଶ ମୋତେ ମିଳିନାହିଁ ।

(ରାଧାଗୁପ୍ତ ଓ କଳିଙ୍ଗର ରାଜଦୂତଙ୍କର ପ୍ରବେଶ )

ରାଧାଗୁପ୍ତ—କଳିଙ୍ଗର ରାଜଦୂତ—ଧର୍ମପାଳ ।

ଧର୍ମପାଳ— ଯେଉଁ ସିଂହାସନରେ ରାମ ଯୁଧିଷ୍ଠିର ବସିଥିଲେ, ଭାରତର ସେହି ସିଂହାସନକୁ ନମସ୍କାର ଜଣାଉଅଛି ।

ଅଶୋକ—କଳିଙ୍ଗ ନରପତିଙ୍କର ସବୁ କୁଶଳ ତ ?

ଧର୍ମପାଳ—ମହାରାଜ ! କଳିଙ୍ଗ ନରପତି ରାଜ୍ୟର ମଙ୍ଗଳକୁ ନିଜର ମଙ୍ଗଳ ବୋଲି ଭାବନ୍ତି । ରାଜ୍ୟ-ଶାସନଟା ତାଙ୍କ ପାଖରେ ଲୋକସେବା । ନିଜ ସୁଖଠାରୁ ପ୍ରଜା ସୁଖକୁ ସେ ଅଧିକ ଦେଖନ୍ତି । ସେଥିପାଇଁ କଳିଙ୍ଗରେ ଭିକାରି ଓ ଦରିଦ୍ରଙ୍କର ଖାଲି ନାମ ଶୁଣାଯାଇଥାଏ ।

ଗଣଭଟ୍ଟ—( ରାଧାଗୁପ୍ତ ଓ ଅଶୋକଙ୍କର ଈର୍ଷ୍ୟାଜନିତ ଭ୍ରୂକୁଞ୍ଚନ ଦେଖି) ସ୍ୱାଧୀନ ରାଜ୍ୟରେ ପ୍ରଜା ଧନଶାଳୀ ହେବା ଯେମିତି ଦରକାର, ସୁଖୀ ଅଥବା ସ୍ୱଚ୍ଛନ୍ଦ ହେବା ସେହିପରି ବିପଦ । ସୁଖ-ସ୍ୱାଚ୍ଛନ୍ଦ୍ୟ ପରାଧୀନ ପକ୍ଷରେ ଭଲ ଦିଶେ । ସ୍ୱାଧୀନତା ପରି ଆଉ ବେଶି ଦାମ୍ପି ଉପଭୋଗ୍ୟ ବସ୍ତୁ ନାହିଁ କି ନା !

ଧର୍ମପାଳ— (ଗଣଭଟ୍ଟଙ୍କୁ ଚାହିଁ) କଳିଙ୍ଗ ପ୍ରଜା କିପରି ସୁଖୀ ଅଥଚ ସ୍ୱାଧୀନ ତାହା ନିଜେ ନ ଦେଖିଲେ ବୁଝି ପାରିବେ ନାହିଁ । ମୋର ସେଠାରେ ଜନ୍ମ ବୋଲି ଏ କଥା କହୁନାହିଁ । ପର ରାଜ୍ୟ ବୋଲି ମୋ ପକ୍ଷରେ କିଛି ନାହିଁ—କଳିଙ୍ଗ ଓ ମଗଧକୁ ମୁଁ ସମାନ ଦୃଷ୍ଟିରେ ଦେଖେଁ । କାରଣ ମୁଁ କୌଣସି ଗୋଟିଏ ଦେଶର ପ୍ରଜା ନୁହେଁ—ରାଜସ୍ୱ ଦେବାକୁ ମତେ ପଡ଼େ ନାହିଁ ।

ଗଣଭଟ୍ଟ— (ମୃଦୁ ସ୍ୱରରେ) କିନ୍ତୁ ଆପଣ ତ କଳିଙ୍ଗର ରାଜଦୂତ ହୋଇ ଆସିଛନ୍ତି ?

ଧର୍ମପାଳ— (ସହଜ ସ୍ୱରରେ) ହେଁ କେବଳ ଜଣେ ପରିବ୍ରାଜକ ବୋଲି—ମଗଧ ସମ୍ରାଟ୍‌ଙ୍କର ଦୂତ ହେବା ପାଇଁ ମଧ୍ୟ ମୋର ବାଧା ନାହିଁ ।

ଅଶୋକ —ତାହାହେଲେ କଳିଙ୍ଗରାଜାଙ୍କୁ ଦୟାକରି ଜଣାଇବେ—

ଭାରତ ସମ୍ରାଟ୍ ସେ ଦେଶ ବିରୁଦ୍ଧରେ ଯୁଦ୍ଧଯାତ୍ରା କରି ଆସୁଚନ୍ତି ।

(ରାଧାଗୁପ୍ତ, ଗଣଭଦ୍ର ଓ ଧର୍ମପାଳଙ୍କର ଯୁଗପତ୍ ଶୃଙ୍ଖଳା ଓ ବିସ୍ମୟ ଏବଂ ପ୍ରଥମେ ସମସ୍ତେ ଅଶୋକଙ୍କୁ ଓ ପରେ ପରସ୍ପରକୁ ଅବାକ୍ ଦୃଷ୍ଟିରେ ଚାହିଁବା)

ଧର୍ମପାଳ— କିନ୍ତୁ ମହାରାଜ !

ଗଣଭଦ୍ର—(ଧର୍ମପାଳଙ୍କୁ) କିଛି ମନେ କରିବେ ନାହିଁ—କଳିଙ୍ଗ ଜୟ କରିବା ଭାରତ ସମ୍ରାଟଙ୍କର ଅନେକ ଦିନର ଇଚ୍ଛା; କିନ୍ତୁ ଦୂତ ଅଭାବରେ ଏପର୍ଯ୍ୟନ୍ତ ସେ ଖବରଟା ପଠାଯାଇ ପାରି ନ ଥିଲା

ଧର୍ମପାଳ— (ବିସ୍ମିତ ହୋଇ) କିନ୍ତୁ ମହାରାଜଙ୍କର ବାକ୍ୟ ତ ପରିହାସ ନୁହେଁ !

ଅଶୋକ— ନା, ପରିହାସ ନୁହେଁ, ସାମ୍ରାଜ୍ୟର ଅଧୀନତା ନେବା-ପାଇଁ କଳିଙ୍ଗରାଜଙ୍କୁ ମୁଁ ଏଥିପୂର୍ବେ ପଠାଇଥିଲି । ସେ ତାହା ଗ୍ରହଣ କରିନାହାନ୍ତି ।

ରାଧାଗୁପ୍ତ—(ମନ୍ତ୍ରୀତ୍ୱ ଦେଖାଇବା ଉଦ୍ଦେଶ୍ୟରେ) କଳିଙ୍ଗ ଜୟପରେ ସମଗ୍ର ହିନ୍ଦୁସ୍ଥାନ ଗୋଟାଏ ଛତ୍ର ତଳେ ରହିବ । ବାକି ସିଂହଳ ଓ ପାଣ୍ଡ୍ୟ ପ୍ରଭୃତି କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ କେତୋଟି କଳିଙ୍ଗ ତୁଳନାରେ କିଛି ନୁହେଁ ।

ଧର୍ମପାଳ—(ବିମୂଢ଼ଭାବରେ ପ୍ରଥମେ ରାଧାଗୁପ୍ତ ଓ ପରେ ଅଶୋକଙ୍କୁ ଚାହିଁ) ମହାରାଜ ! କଳିଙ୍ଗ ରାଜନବରରୁ ମଗଧ ସମ୍ରାଟଙ୍କ ନିକଟକୁ ନିମନ୍ତ୍ରଣ ନେଇ ମୁଁ ଆସିଅଛି ।

ଗଣଭଦ୍ର—ଆମର ମଧ୍ୟ ନିମନ୍ତ୍ରଣ ନେଇ ଫେରନ୍ତୁ—ଯୁଦ୍ଧ ନିମନ୍ତ୍ରଣ ।

ଧର୍ମପାଳ— (ଗମ୍ଭୀର ହୋଇ) ଏ ଘଟନା କଳିଙ୍ଗର ରାଜା ପ୍ରଜା

ସମସ୍ତଙ୍କ ପକ୍ଷରେ ଅପ୍ରତ୍ୟାଶିତ । କଳିଙ୍ଗ ନରପତି ବର୍ତ୍ତମାନ ପଞ୍ଚବାର୍ଷିକ ଉତ୍ସବ ପାଳିବାକୁ ଯାଇ ଭାରତ ଅଧୀଶ୍ୱରଙ୍କୁ ସବିନୟ ଆହ୍ୱାନ ପଠାଇ ଅଛନ୍ତି । ସମଗ୍ର କଳିଙ୍ଗ ଏହି ପାଞ୍ଚଦିନ ବରାବର ଏକ ଉତ୍ସବର ରାଜ୍ୟ । ପ୍ରଜାମାନଙ୍କ ପାଇଁ ରାଜକୋଷ ମୁକ୍ତ । କଳିଙ୍ଗର ରାଜା ସିଂହାସନ ଛାଡ଼ି ଭିକ୍ଷୁବେଶରେ ରାଜପଥର ଦୀନ ଦୁଃଖୀଙ୍କ ସଙ୍ଗେ ହସି ହସି ଆଳାପ କରୁଛନ୍ତି । ସୈନ୍ୟ, ସାମନ୍ତ ଓ ଅନ୍ୟାନ୍ୟ ସବୁ କର୍ମଚାରୀଙ୍କର ଛୁଟି, ସବୁ କାମ ଖେଳରେ ପରିଣତ ହୋଇଅଛି । ମୁଁ ଏପରି ସମୟରେ ଖବର ଦେବି—ମଗଧବାହିନୀ ନିକଟରେ—ଯୁଦ୍ଧପାଇଁ ତିଆର ହୁଅ !

ଗଣଭଞ୍ଜ—ନା, ନା, ତାହାହେଲେ କିନ୍ତୁ ସେମାନଙ୍କ ଖେଳରେ ବ୍ୟାଘାତ ହୋଇପାରେ ! ଆପଣ କେବଳ ଦୟାକରି କଳିଙ୍ଗରାଜାଙ୍କୁ ଗୋପନରେ ସମ୍ବାଦ ଦେଲେ ହେଲା ।

ଧର୍ମପାଳ—କିନ୍ତୁ ଏ ଘଟନା କଣ ଗୋପନ ହୋଇ ରହିବ ? ( କାତର ସ୍ୱରରେ ) ଶହ ଶହ ଲୋକଙ୍କର ପ୍ରାଣନାଶ ଯେ ପ୍ରତ୍ୟକ୍ଷରେ ଘଟିବ !

ଗଣଭଞ୍ଜ—ଶହ ଶହ ଲୋକଙ୍କର ପ୍ରାଣନାଶ ଦରକାର, ଜଣେ ଜଣେ ଲୋକଙ୍କର ବଞ୍ଚିବା ପାଇଁ ।

ଧର୍ମପାଳ—କିନ୍ତୁ କଳିଙ୍ଗ ଯେ ହିଂସା କଣ ବହୁଦିନୁ ଭୁଲି ଯାଇଛି !

ଗଣଭଞ୍ଜ—ତେବେ ତାକୁ ବର୍ତ୍ତମାନ ଆମିଷ ଧରିବାକୁ ହେବ, କାରଣ ମନୁଷ୍ୟର ଦେହଟା ଆମିଷ ।

ଅଶୋକ—ରାଧାଗୁପ୍ତ ! ସବୁ ବନ୍ଦୀଙ୍କୁ ମୁକ୍ତ କରି ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାକୁ ଆଦେଶ ଦିଅ । ସମସ୍ତ ରାଜ୍ୟରେ ଯୁଦ୍ଧବାର୍ତ୍ତା ପ୍ରଚାର କର ।

( ରାଧାଗୁପ୍ତ ମୁଣ୍ଡ ନୁଆଁଇ ରାଜାଦେଶ ପାଳନ ପାଇଁ ପ୍ରସ୍ଥାନ

ଜଣାଇଲେ)

ଧର୍ମପାଳ—ମହାରାଜ ! କଳିଙ୍ଗ ନରପତିଙ୍କ ନିମନ୍ତ୍ରଣର ଏହାହିଁ କଣ ଉତ୍ତର ?

ରାଧାଗୁପ୍ତ—ଧର୍ମପାଳ ! ଯୁଦ୍ଧ ବିଷୟରେ ଭାରତ ସମ୍ରାଟ୍ ବେଶି କଥା କହନ୍ତି ନାହିଁ, କାରଣ ସେ ତାଙ୍କର ଅତି ପ୍ରିୟ ବନ୍ଧୁ । କଳିଙ୍ଗରାଜ ଯେଉଁ ନିମନ୍ତ୍ରଣ ପଠାଇଚନ୍ତି, ତାହା ସମାନ ଆସନର ରାଜପୁରୁଷଙ୍କୁ ପଠାଯାଏ । ଭାରତ ସମ୍ରାଟ ସେ ନିମନ୍ତ୍ରଣକୁ ରକ୍ଷା କଲେ କଳିଙ୍ଗ ସ୍ୱାଧୀନ ବୋଲି ସ୍ୱୀକାର କରିବେ । କଳିଙ୍ଗ ସମୃଦ୍ଧଶାଳୀ ଦେଶ । ଭାରତ ସାମ୍ରାଜ୍ୟରୁ ଅଲଗା ରହି ପାରିବାକୁ ତାହାର କ୍ଷମତା ଥିଲେ ବିନା ଯୁଦ୍ଧରେ ନିଜର ସ୍ୱାଧୀନତା ଅନ୍ୟ ହାତରେ ଦେବ ନାହିଁ । କଳିଙ୍ଗର ଅଭିବୃଦ୍ଧି ଶୁଣି ବହୁ ପୂର୍ବରୁ ତାହା ଜୟ କରିବାର ମନ୍ତ୍ରଣା ହୋଇଛି । ବର୍ତ୍ତମାନ ତାହା ବିରୁଦ୍ଧରେ ଯୁଦ୍ଧଯାତ୍ରା କରିବାର ପ୍ରକୃଷ୍ଟ ସମୟ ।

ଧର୍ମପାଳ—( ଉତ୍ତେଜିତ ହୋଇ ) କାରଣ କଳିଙ୍ଗ ରାଜକୋଷ ବର୍ତ୍ତମାନ ଶୂନ୍ୟ ଏବଂ ରାଜା ନିଜେ ଭିକ୍ଷୁ ।

ରାଧାଗୁପ୍ତ—ଯାହାହେଉ କଳିଙ୍ଗ ବିରୁଦ୍ଧରେ ମଗଧର ଯୁଦ୍ଧଯାତ୍ରା ସମ୍ପୂର୍ଣ୍ଣ ଆକସ୍ମିକ ନୁହେଁ ।

ଧର୍ମପାଳ—(ବିସ୍ମିତ ଦୃଷ୍ଟିରେ ) ନା, ଆକସ୍ମିକ ନୁହେଁ !

(ଯବନିକା)

# ତୃତୀୟ ଅଙ୍କ

[ ଅନ୍ତଃପୁରର ଶ୍ରେଷ୍ଠ ଫୁଲ ବଗିଚା । ସମୟ—ସନ୍ଧ୍ୟା । ଶରତ୍ର ଶୁଭ୍ର ଜ୍ୟୋତ୍ସ୍ନା ଫୁଲଗଛ ତଳେ ଆଲୋକଛାୟାର ଅପୂର୍ବ ଅଭିନୟ କରୁଚି । ବଗିଚାଟିର ଗୋଟିଏ ପାଖରେ ପ୍ରବେଶପଥ—ଫାଟକ । ସଙ୍ଘମିତ୍ରାଙ୍କର ସଖୀ ମାଧ୍ବାରିକା ତିନୋଟି କାଠର ଆସନ ସେହି ଫାଟକ ପାଖରୁ ଆଣି ବଗିଚା ଭିତରେ ସଜାଡ଼ି ରଖୁଚି । ମାଧ୍ବାରିକାର ବୟସ ସଙ୍ଘମିତ୍ରାଙ୍କଠାରୁ କିଛି କମ୍; କିନ୍ତୁ ଚତୁରତା କମ୍ ନୁହେଁ । ରାଜକେମାଙ୍କ ସାଥିରେ ଗଣଭଟ୍ଟଙ୍କଠାରୁ ଶିକ୍ଷା ପାଇ ନାରୀସୁଲଭ ଲଜ୍ଜାରୁ ସେ ଅନେକ ପରିମାଣରେ ଉତ୍ତୀର୍ଣ୍ଣ ହୋଇଅଛି । ଅଧିକାଂଶ ରମଣୀଙ୍କ ପରି ଦେହ ସଙ୍ଗେ ତାହାର ବୁଦ୍ଧି ବୃତ୍ତି ମଧ୍ୟ ବୟସକୁ ଧାର ହୋଇ ଏପରି ଦ୍ରୁତଗତିରେ ବଢ଼ିଚାଲିଚି ଯେ ଅଳ୍ପ ଦିନ ପରେ ତାହା କୂଅପାଣି ପରି ସ୍ଥିର ହୋଇଯିବାର ଆଶଙ୍କା । ବେଶବିନ୍ୟାସରେ ସେ ଏତେଦୂର ପଟୁ ଯେ, ସେଥିରେ ତା ଦେହ ଲୁଚେ ଯେତିକ, ଫୁଟେ ସେଥିରୁ ବେଶି । ସେ ରୂପସୀ ନ ହେଲେହେଁ ବୟସ ଓ ଶିକ୍ଷା ତାହାର ସବୁ ଅବୟବରେ ରୂପ ଆଣିଦେଇଚି । ହାସ୍ୟ ତାହାର ଲଜ୍ଜାରଞ୍ଜିତ ନୁହେଁ, କଟାକ୍ଷରେ ବଙ୍କିମା ନାହିଁ ଏବଂ କଥା ତାହାର ସଙ୍କୋଚଶୂନ୍ୟ । ତାହାର ନିର୍ଜୀବ ମୂର୍ତ୍ତିଶିଳ୍ପରେ ବିଧାତା ଯେଉଁ ରୂପ ଦେଇନାହିଁ, ଗଣଭଟ୍ଟ ନିଜର ଶିକ୍ଷାବଳରେ ତାହା ଫେରାଇ ଆଣିଛନ୍ତି । ସେହି ରୂପର ଅଭାବ ପୂରାଇବା ପାଇଁ ଏ ଗୁଣଗୁଡ଼ିକୁ ସେ ଭଲଭାବରେ କର୍ଷଣ କରିଅଛି—ଯଦିବା ସମ୍ପୂର୍ଣ୍ଣ ନିର୍ବିକାର ରୂପେ ହାସଲ କରିପାରିନାହିଁ ।

ଗଣଭଟ୍ଟ ମାଧ୍ବାରିକାର ଅଲକ୍ଷ୍ୟରେ ଫାଟକ ପାଖରେ ଆସି ଠିଆ ହେଲେ । ଦେହରେ ବର୍ତ୍ତମାନ ଦରବାରୀ ଚପକନ୍ ନାହିଁ । ତାହା ଏତେଦୂର ଶ୍ରେଷ୍ଠ ଯେ ସେଥିରେ ତାଙ୍କର ବୟସ ଅନେକ ପରିମାଣରେ କମ୍ ହୋଇପଡ଼ିଚି । ]

ଗଣଭଣ୍ଡ—( ଫାଟକକୁ ଧରି ) ମାଦ୍ଧାରିକା !

ମାଦ୍ଧାରିକା—( ଫେରିପଡ଼ି ତାଙ୍କୁ ଗୁହାଁଇଲା ଏବଂ ମୃଦୁ ହସି) ଆସନ୍ତୁ ।

ଗଣଭଣ୍ଡ—(ଫାଟକ ପିଟାଇ ଆସୁ ଆସୁ) ତୁମେ ଏକା ଏଠାରେ ?

ମାଦ୍ଧାରିକା—ରାଜକେମା ଅଳ୍ପ ସମୟ ପରେ ଆସୁଚନ୍ତି ।

ଗଣଭଣ୍ଡ—( ପାଖକୁ ଆସି ) କଳିଙ୍ଗ ଯିବାପାଇଁ ସବୁ ଠିକ୍ ସରିଚି ତ ?

ମାଦ୍ଧାରିକା—ହଁ ଆଜ୍ଞା, ତାହାରି ଯୋଗାଡ଼ରେ ତ ଏତେବେଳ ବ୍ୟସ୍ତଥିଲୁଁ ! ( ଆସନ ଦେଇ ) ବସନ୍ତୁ । ( ଗଣଭଣ୍ଡଙ୍କ ବସିବା ପରେ ମାଦ୍ଧାରିକା ମଧ୍ୟ ଆଉ ଏକ ଆସନରେ ବସିଲା )

ଗଣଭଣ୍ଡ—ସେହି କଥା ତୁମକୁ ଆଉ ଥରେ ମନେପକାଇ ଦେବାକୁ ଆସିଥିଲି । କାରଣ କାହିଁ ଟିକିଏ ବାହାରିଲେ ଝିଅମାନଙ୍କର ଯୋଗାଡ଼ ଗୋଟାଏ ଯୁଦ୍ଧ ଆୟୋଜନ ଅପେକ୍ଷା ବେଶି ସମୟ ନିଏ । ଠିକ୍ ବାହାରିବାକୁ ଦଣ୍ଡେ ଥିବ, ତୁମର କଣ ଯିବ କଣ ନାହିଁ, ସେତିକି ବେଳେ ଯୋଗାଡ଼ ହେବ ।

ମାଦ୍ଧାରିକା—(ନିଜର ନ୍ୟୂନତା ଅବରୋଧ କରି) ଆପଣଙ୍କର ସବୁ ଯୋଗାଡ଼ ସରିଚି ନିଶ୍ଚୟ ?

ଗଣଭଣ୍ଡ—(ଉପେକ୍ଷାର ମୃଦୁହାସ୍ୟ ହସି) ମୋ ଯୋଗାଡ଼ ତ ସାଥି ସାଥି । ବେଳ୍ ତ—ଗୁଲ ସମସ୍ତେ । ମଝିରେ ମଝିରେ ଏମିତି ଯୁଦ୍ଧ ହେଉଥିଲେ ଆମର ଅନ୍ତତଃ ଦେଶଭ୍ରମଣ ହେବ । ଆଉ ଗୋଟିଏ କଥା—ପଶା ପାଲିଟା ସାଥିରେ ନେବାକୁ ଭୁଲିବ ନାହିଁ ।

ମାଦ୍ଧାରିକା—ଆମେ କଣ ସେଠାରେ ପଶା ଖେଳିବାକୁ ଯିବା ?

ଗଣଭଣ୍ଡ—ପାଶାଖେଳ ନଇଲେ ବଣଭୋଜି । କଳିଙ୍ଗରେ ବଣଭୋଜି ପାଇଁ ଯେମିତି ସୁନ୍ଦର ଜଙ୍ଗଲ ଅଛି, ମଗଧ ଝିଅମାନେ

କଳିଙ୍ଗ ଯୁଅଙ୍କୁ ପଶା ଖେଳ ହରାଇ ଦେବାକୁ ମଧ୍ଯ ସୁବିଧା ଅଛି ସେମିତି ।

ମାଳବିକା—(ଉପହାସ ସ୍ଵରରେ) ଉଃ, ମଗଧ ଝିଅଙ୍କର ଭାରି ତ ଗରଜ ! ଝିଅମାନେ ମଧ୍ଯ ଯୁଦ୍ଧ କରିପାରନ୍ତି, ଜାଣନ୍ତି କି ?

ଗଣଭଞ୍ଜ—ଅବଶ୍ୟ—ବାକ୍‌ଯୁଦ୍ଧ ।

ମାଳବିକା—(ରକ୍ତଗଣ୍ଡ ହୋଇ) ଆପଣ ? ଆପଣ କି ଯୁଦ୍ଧ କରନ୍ତି ? ଶର ମାରନ୍ତି ନା ଖଡ୍‌ଗ ଧରନ୍ତି ?

ଗଣଭଞ୍ଜ—ନାହିଁ, ମୁଁ ମଧ୍ଯ ଝିଅମାନଙ୍କ ଭିତରୁ ଜଣେ । ତେବେ ତଫାତ୍ ଏତିକ ଯେ ମୋ ବାକ୍ୟଗୁଡ଼ାକରେ ଅସମାପିକା କ୍ରିୟାର ସଂଖ୍ୟା ବେଶି, ସେଥିପାଇଁ ଟିକଏ ଲମ୍ବା; ନ ହେଲେ ମତେ ପଶା ଖେଳ ଆସେ, ରୋକ୍ଷେଇଟା ନିଜ ପାଇଁ ଚଳାଇ ଦେଇ ପାରେ ! ଝିଅମାନେ ଆଉ କେଉଁ କଥା ଅଧିକା ଜାଣନ୍ତି ? ଆଉ ଗୋଟାଏ ବିଷୟରେ ମୋର ସନ୍ଦେହ ଅଛି, ଯାହା ଆଜି ସୁଦ୍ଧା କୌଣସି ଭାଗ୍ୟବାନ୍ ପୁରୁଷର ଆୟତ୍ତ ଭିତରକୁ ଆସିନାହିଁ । ସେ କଥାଟି କଣ ଜାଣ ମାରୁ ? ସନ୍ତାନ ଉତ୍ପାଦନ ।

ମାଳବିକା—(ଆସନ ଛାଡ଼ି ଅଭିମାନ ସ୍ଵରରେ) ଦେଖନ୍ତୁ, ଆପଣଙ୍କ ସାଥିରେ ଏତିକ । (ମୁହଁ ଫେରାଇନେଲା କ୍ଷିପ୍ରଗତିରେ; କିନ୍ତୁ ଧୀରେ ଧୀରେ ବଗିଚା ଭିତରକୁ ଗ୍ଲଲ । ଇଚ୍ଛା, ଗଣଭଞ୍ଜ ତାହାର ଅଭିମାନ ଭାଙ୍ଗନ୍ତୁ । )

ଗଣଭଞ୍ଜ—(ଆସନ ଛାଡ଼ି) ବାସ୍, ଏ ହେଲା ଝିଅମାନଙ୍କର ଆଉ ଗୋଟାଏ ବିଶେଷ ଗୁଣ, ଯାହା ମୁଁ ହାସଲ କରି ପାରିନାହିଁ । (ମୃଦୁଗତିରେ ମାଳବିକା ନିକଟକୁ ଯାଇ, କୌତୁକ ଓ ସ୍ନେହମିଶ୍ରିତ ସ୍ଵରରେ ପଛପାଖରୁ ) ଏହା ତ ସମ୍ମୁଖ ଯୁଦ୍ଧ ହେଲା ନାହିଁ, ମାରୁ ! ବେଦ, ଉପନିଷଦ ପ୍ରଭୃତି ପୂର୍ବଗ୍ରଗର

ଲକ୍ଷଣ ଗୁଡ଼ିକ କ'ଣ ତୁମଠାରେ ଦେଖିବାକୁ ପାଉଛି ? ଯୁବ ବୟସରେ ଏହିପରି ତୁମର ଧାରଣା ?

ମାଧବିକା—(ଅଭିମାନ ପୂର୍ଣ୍ଣ ଦୃଷ୍ଟିରେ ଚାହିଁ) ଆପଣ ନାରୀ-ବିଦ୍ୱେଷୀ, ମତେ କିଛି କହିବେ ନାହିଁ ।

ଗଣଭଟ୍ଟ—ନାରୀକୁ ମୁଁ ବିଦ୍ୱେଷ କରୁନାହିଁ । ତାହାର ଯଥାର୍ଥ ସ୍ୱରୂପ ଯାହା, ସେଥିରେ ମୋର କଳ୍ପନାର ଇନ୍ଦ୍ରଜାଲ ଖଞ୍ଜି ଅନ୍ତରଞ୍ଜିତ କରୁନାହିଁ । ଯେଉଁ ଗୁଣ ତା'ଠାରେ ନାହିଁ, ଆପଣାକୁ ଭୁଲଯାଇ ତାହାର ମିଥ୍ୟା ଆରୋପ କରୁନାହିଁ । ମୁଁ ନାରୀକୁ ନାରୀରୂପରେ ଦେଖେ, ସ୍ୱର୍ଗର ଅପ୍ସରା କିମ୍ବା ଦେବୀ-ରୂପରେ ନୁହେଁ ।

ମାଧବିକା—(ପୂର୍ବ ପରି ଅଭିମାନର ଛଳନା କରି) ଆପଣଙ୍କ ମୁହଁରେ ଏ ସବୁ କଥା ଆଦୌ ଭଲ ଶୁଣାଯାଉ ନାହିଁ । ଆପଣ କେତେ ଜଣ ଝିଅଙ୍କୁ ଜାଣନ୍ତି ? କାହା ସାଥିରେ ମିଶିଛନ୍ତି ? ଖାଲି ବହି ପଢ଼ିଲେ ସବୁକଥା ଜଣାଯାଏ ନାହିଁ, ବୁଝିଲେ ?

ଗଣଭଟ୍ଟ—ନାରୀକୁ ଜାଣିବା ପାଇଁ ଯଦି ଯୋଗାଭ୍ୟାସ ଦରକାର ହୁଏ, ମୁଁ ତାହା କରି ନାହିଁ । କିନ୍ତୁ ତାହାର ପରିଚୟ ପାଇବାକୁ କେତେକ ସୁଯୋଗ ମୋତେ ମିଳିଛି ।

ମାଧବିକା—ଜେମାଙ୍କୁ ଏବଂ ମୋତେ ଶିକ୍ଷା ଦେବାର ଯେଉଁ ସୁଯୋଗ ପାଇଚନ୍ତି, ସେ କଣ ଝିଅମାନଙ୍କୁ ଚିହ୍ନିବାପାଇଁ ଯଥେଷ୍ଟ ? ଆମେ ଦୁହେଁ ତ ଆପଣଙ୍କ ପାଖରେ ଶିଷ୍ୟା ! ପାଠ ପଢ଼େଇଲେ ବୋଲି ଆମ ଦୁହିଁଙ୍କୁ ଦେଖି ନାରୀଜାତିଟାକୁ ବୁଝି-ସାରିଛନ୍ତି ପରି ?, ବାଃ !

ଗଣଭଟ୍ଟ—କେବଳ ତୁମ ଦୁହିଁଙ୍କୁ ଦେଖି ନାରୀ-ଚରିତ ମୁଁ ବୁଝିନାହିଁ— ଅନ୍ୟମାନଙ୍କ ସାଥିରେ ମଧ୍ୟ ମିଶିଛି । ନାରୀଠାରୁ ମୋର ଜନ୍ମ !

ମାଦ୍ରାବିକା—ଖାଲି ମିଶିଲେ କଣ ଜଣେ ଜଣକୁ ସହଜରେ ବୁଝି-ଯିବ ? ଆପଣ କେତେ ଜଣ ଝିଅଙ୍କର ସୁଖ-ଦୁଃଖ ନିଜେ ଅନୁଭବ କରିଛନ୍ତି ? ନିଜ ସୁଖ-ଦୁଃଖର ଛାୟା କେତେଜଣଙ୍କ ଭିତରେ ଦେଖିଚନ୍ତି ? କେତୋଟି ଝିଅଙ୍କର ନିକଟତମ ହୋଇଚନ୍ତି "

ଗଣଭଣ୍ଡ—( କୁଟିଳ ଦୃଷ୍ଟିରେ ) ନିକଟତମ ଯେ ମିଶିବାର ମୋହଟକ ତୁଟିଯାଏ, ମାରୁ ! ଦୂର ପର୍ବତ ପରି ଦୂର ନାରୀ ମଧ୍ୟ ସୁନ୍ଦର । ଆଉ ମଧ୍ୟ ଜଣକର ନିକଟତର ହେଲେ ଅନ୍ୟ-ମାନଙ୍କଠାରୁ ଦୂରତର ହେବାକୁ ପଡ଼େ ଏବଂ ନିକଟ ବନ୍ଧୁ ଅପେକ୍ଷା ଦୂରର ବନ୍ଧୁ ଅଧିକ ଅଲଭ୍ୟ ହୁଏ ଏବଂ ସେଥିପାଇଁ ଅଧିକ ଲୋଭନୀୟ । ସେ ଦଶା ଯେ ଆହୁରି କ୍ଳେଶକର ।

ମାଦ୍ରାବିକା—( ବ୍ୟଙ୍ଗ ସ୍ୱରରେ ) ବାଃ, ସେଥିପାଇଁ ତେବେ ଏତେ ବୟସ ହେଲଣି, ବାହା କରି ନାହାନ୍ତି ? ଧନ୍ୟ ଆପଣ !

ଗଣଭଣ୍ଡ—( ସେ ବ୍ୟଙ୍ଗକୁ ଭ୍ରୂକ୍ଷେପ ନ କରି ) ବୟସଟାକୁ ଭୁଲି ରହିବାକୁ ହିଁ ବାହା କରି ନାହିଁ, ମାରୁ ! ଆଉ ବାହା କରନ୍ତି କାହାକୁ ଭଲା ? ଯେତୋଟି ଯୁବତୀ ଝିଅ ଆଖି ଆଗରେ ପଡ଼ୁଛନ୍ତି, ସମସ୍ତଙ୍କୁ ତ ବାହା କରିବାକୁ ଇଚ୍ଛା ହେଉଚି, ଅଥଚ ସେପରି ସୁବିଧା ମୋର ନାହିଁ । କହିଲ ଭଲା, ତାଙ୍କ ଭିତରୁ ଜଣେ କାହାକୁ ନିଜ ପାଇଁ ବାଛିବ ? ସେଥିରେ ଯେ ଜଣକ ପାଇଁ ପକ୍ଷପାତ ଓ ଆଉମାନଙ୍କ ପାଇଁ ଅବହେଳା !

ମାଦ୍ରାବିକା—( ବିସ୍ମୟ ଓ ବିରକ୍ତି ଭଙ୍ଗୀ କରି ) କଣ କହିଲେ ?

ଗଣଭଣ୍ଡ—( ପୂର୍ବପରି ସହଜ ସ୍ୱରରେ ମାଦ୍ରାବିକାର ଭଙ୍ଗୀ ଲକ୍ଷ୍ୟ କରି ) ଡର ନାହିଁ ମାରୁ ! ତୁମକୁ ଦେଖି ମଧ୍ୟ ବାହା କରିବାକୁ ଇଚ୍ଛା ହେଉଚି । କିନ୍ତୁ ସେହି କାରଣରୁ···

ମାଦ୍ଦାରିକା—( କ୍ରୋଧର ଅଭିନୟ କରି ) ଗୁରୁଦେବ !

ଗଣଭଟ୍ଟ—(ବାଧା ଦେଇ ) ନା, ଗଣଭଟ୍ଟ !

ମାଦ୍ଦାରିକା—( ନିଜେ ଛଳନା କରି )ଆପଣ ଏପରି ମିଛ ଛଳନା କରି ପାରନ୍ତି

ଗଣଭଟ୍ଟ—( ମାଦ୍ଦାରିକାର ଭାବ ପରିବର୍ତ୍ତନକୁ ଉପଭୋଗକରି ) ମିଛ ! ତୁମକୁ ଯେ ପ୍ରୀତି-ଆଖିରେ ଦେଖିବ ସେ ମିଛ !

ମାଦ୍ଦାରିକା—(ଗଣଭଟ୍ଟଙ୍କର ଦୃଢ଼ତା ପରୀକ୍ଷାପାଇଁ) କିନ୍ତୁ ନିଜ ଶିଷ୍ୟା ପ୍ରତି ଆପଣଙ୍କର ଏପରି ବ୍ୟବହାର କଣ ଉଚିତ ? (ବୁଲି-ବୁଲି ଉଭୟେ ସେହି ଆସନ ପାଖକୁ ଆସିଯାଇଥିଲେ ଏବଂ କେହି କାହାକୁ ଅପେକ୍ଷା ନ କରି ବସିଲେ । )

ଗଣଭଟ୍ଟ—( ନିଜର ସ୍ୱାଭାବିକ ସ୍ୱରରେ ) କିପରି ବ୍ୟବହାର କାହାପାଇଁ ଉଚିତ, ତାହା ମୋର ଗୃହଶାଳୀରୁ ଜାଣିରଖିଛି, ମାରୁ ! ନାରୀକୁ ପ୍ରୀତିଦୃଷ୍ଟିରେ ଦେଖିବା ପୁରୁଷର ଅନୁଚିତ ନୁହେଁ । ତୁମର ନାରୀ ହେବା ଯେପରି ଉଚିତ, ମୋହର ପୁରୁଷ ହେବା ଯେପରି ଉଚିତ, ଏ ସେହିପରି ଉଚିତ; ମଣିଷକୁ ଶୋକ ଶୋଷ କରିବା ଯେପରି ଉଚିତ , ଏ ସେହିପରି ଉଚିତ । ଏ ସବୁ କଥା ଅବଶ୍ୟ ଗୃହଶାଳୀରେ କେହି ମତେ ଶିଖାଇ ନ ଥିଲେ ।

ମାଦ୍ଦାରିକା—(ଅଧିକ ଛଳନା କରି) ଗୃହଶାଳୀର ଶିକ୍ଷକ ଆପଣଙ୍କ-ଠାରୁ ଢେର୍ ଭଲ । ଛି,ଛି, ଆପଣ ଏତେ ନିର୍ଲଜ୍ଜ ହୋଇ ପାରନ୍ତି, ଏତେ ଅଭଦ୍ର !

ଗଣଭଟ୍ଟ—( ପୂର୍ବପରି ) ହଁ ମାରୁ, ନିର୍ଲଜ୍ଜ ନିଶ୍ଚୟ—କାରଣ ମୁହଁରେ ମୋହର ଓଢ଼ଣୀ ନାହିଁ, ମନରେ ମୋହର ଘୋଡ଼ଣୀ ନାହିଁ—ନିଜକୁ ମୁଁ ଅନ୍ୟମାନଙ୍କଠାରୁ ଲୁଚାଇ ନିଜର ଗୁରୁତ୍ୱ

ବଡ଼ାଏ ନାହିଁ, ଦେହଟାକୁ ଅନ୍ୟ ଆଖିରେ ରହସ୍ୟମୟ କରିବାକୁ ଚାହେଁ ନାହିଁ, କଥାଟାକୁ ଅନ୍ୟ କାନରେ ସଙ୍ଗୀତମୟ କରିବାକୁ ଯାଏ ନାହିଁ । ମୋହର ଭିତରେ ଯାହା, ବାହାର ଯେପରି,ସେହି ଭାବରେ ତାକୁ ମୁଁ ଦେଖାଇ ଥାଏଁ—ଛଳନା କରେ ନାହିଁ, ତାଳକୁ ତିଳ କିମ୍ବା ତିଳକୁ ତାଳ କରିବାକୁ ପ୍ରବଞ୍ଚନା ଜ୍ଞାନ କରେ—ଏଥିରେ ଆଉ ନିର୍ଲଜ୍ଜ ନ ହୋଇ କଣ ହେବ ? ପୁଣି ଅଭଦ୍ର ? ଅଭଦ୍ର ହେବା ତ ମୋହର ଜୀବନର ସାଧନା--ନାରୀ ସହିତ ମୁଁ ଏକାନ୍ତରେ କଥା କହେଁ, ଯୁବତୀ ସାଥିରେ ସବୁ ବିଷୟରେ ଟିକ୍ଲୁ କୌତୁକ କରେଁ, ଲୁଗା ପିନ୍ଧିଲେ ମୋହର ଦେହ ଗୋଟାକ ଲୁଚେ ନାହିଁ; ରାଜଦରବାର ପାଇଁ ମୁଣ୍ଡରେ ଭଲ ପଗଡ଼ି ନାହିଁ, ଘରଖଣ୍ଡରେ ମୋହର ପାଁଜଣଙ୍କର ବସିବାକୁ ଜାଗା ନାହିଁ । ଆଉ କଣ ଜାଣ—ସତ କଥାଟାକୁ ମୁଁ ବଙ୍କେଇ ନ କହି ସିଧା କହେଁ, ଆଉ ପାଁଜଣ ଯେପରି ଭାବନ୍ତି ସେହିପରି ଭାବେଁ; କିନ୍ତୁ ସେମାନେ ଯାହା ଗୋପନ ରଖନ୍ତି ତାହା ପ୍ରକାଶ କରେଁ । ହସ ମାଡ଼ିଲେ ଭଲ କରି ହସେଁ, ସବୁ କଥାରେ ଟିକିଏ ଓଠ ମେଲାଇ ଗୁରୁକିଆ ହସ ହସେ ନାହିଁ । ଏ ଯେତେଗୁଡ଼ିକ ଆଚରଣ, ସବୁ ତ ଅଭଦ୍ର !

ମାହାରିକା—(ମୁଗ୍ଧ ଦୃଷ୍ଟିରେ ନିଜର ପ୍ରସଙ୍ଗ ଉଠାଇବା ପାଇଁ) କିନ୍ତୁ ସବୁ ପୁରୁଷ ଆପଣଙ୍କ ପରି ଝିଅମାନଙ୍କୁ ନିଜର ଲୀଳା-କମଳ କରିବାକୁ ଚାହାନ୍ତି ?

ଗଣ୍ଡଭଟ୍ଟ—(ଉତ୍ସାହିତ ହୋଇ) ଖାଲି ଚାହାନ୍ତି ନୁହେଁ, ସୁବିଧା ପାଇଲେ କରନ୍ତି ମଧ୍ୟ—କିନ୍ତୁ ମୁହଁରେ କେବେ କହନ୍ତି ନାହିଁ ।

ମୀହାରିକା (ପରିହାସ ସ୍ୱରରେ) ଆପଣ କିନ୍ତୁ କରନ୍ତି ନାହିଁ—ମୁହଁରେ ଯାହା କହନ୍ତି ମାତ୍ର—ନୁହେଁ କି ? ବେଶ୍ କଥା, ନିଜକୁ ନାସ୍ତିକ ବୋଲି ପରିଚୟ ଦେବାରେ ଗୌରବ ଅଛି ।

ଗଣଭକ୍ତ—(ସ୍ମିତ ହୋଇ) ସେହି ମୋହର ଗୋଟିଏ ପରିଚୟ, ଅନ୍ୟ ପରିଚୟ ନାହିଁ ।

ମୀହାରିକା—(କୌତୁକ ହାସ୍ୟରେ) ସତେ ? ଏତେ ସ୍ପଷ୍ଟ ଆପଣ ? ଏତେ ସହଜରେ ଧରାଦିଅନ୍ତି ?

ଗଣଭକ୍ତ—(ସ୍ୱାଭାବିକ ସ୍ୱରରେ) ସେଇଥିପାଇଁ କେହି ମତେ ବାଧା କରି ନାହାନ୍ତି; ତୁମେ ମଧ୍ୟ କରିବ ନାହିଁ ।

ମୀହାରିକା—(ଏ କଥା ଶୁଣିବା ପାଇଁ ପୂର୍ବରୁ ପ୍ରସ୍ତୁତ ନ ଥିବା ପରି) କିନ୍ତୁ ଗୁରୁଦେବ !

ଗଣଭକ୍ତ—(ଉତ୍ସୁକ ହୋଇ) ମୀହାରିକା, ଆଗରୁ ଫେରି ମନା କରିବି—ମତେ ଏ ଉପାଧିଟା ସବୁଠାରୁ ଖରାପ ଲାଗେ; କାରଣ କାହାକୁ ମୁଁ ଗୁରୁ କରି ମାନି ନାହିଁ, କାହାର ମନ୍ତ୍ର ନେଇ ନାହିଁ । ନିଜର ଗୁରୁ ମୁଁ ନିଜେ ।

ମୀହାରିକା—ବେଶ୍ କଥା, ତେବେ ଏଣିକି ଗଣଭକ୍ତ ବୋଲି ଡାକିବି । (ଗମ୍ଭୀର ହୋଇ) ଗଣଭକ୍ତ ! ମୁଁ—ମୁଁ ତୁମକୁ କି ଆଖିରେ ଦେଖେଁ, ଥରେ ଭାବିଚ କି ?

ଗଣଭକ୍ତ—(ଚମକି ପଡ଼ି ଏବଂ ନିଜର ଦୁଇ ଆଖି ମୀହାରିକା ଆଖିରେ ନିବଦ୍ଧ କରି) ତୁମେ ?

ମୀହାରିକା—(ଦୃଢ଼ ସ୍ୱରରେ) ହଁ, ମୁଁ । କାହିଁକି ଅସମ୍ଭବ ହେଲା ?

ଗଣଭକ୍ତ—ତୁମେ ? ହାଃ ହାଃ ! (ଉଚ୍ଚହାସ୍ୟ) ଚମତ୍କାର ଉପହାସ !

ମୀହାରିକା—(ପୂର୍ବ ପରି) ମୁଁ ମଧ୍ୟ ତୁମକୁ ବିସ୍ମିତ କରି ପାରେ, ଚମକାଇ ଦେଇ ପାରେ, ନୁହେଁ କି ?

ଗଣଭଟ୍ଟ—(କୌତୁକ ଦୃଷ୍ଟିରେ) ତୁମକୁ ? ଆପଣରୁ ସାଙ୍ଗେ ସାଙ୍ଗେ ତୁମେ ?

ମାଦ୍ରୀରକା—କାହିଁକି—ଅପମାନ ଲଗୁଚ ? ଯାହାର କୁଳ ନାହିଁ, ସମ୍ଭ୍ରମ ନାହିଁ, ନିଜର ବାପା ମାଙ୍କୁ ଯେ ଜାଣେ ନାହିଁ, ଅଜ୍ଞାନ ଅବସ୍ଥାରୁ ଯେ ଅନ୍ୟର ଘରତଳ ଆଶ୍ରୟ କରିଚି, ଅନ୍ୟର ଅନ୍ନରେ ପେଟ ପୋଷିଚି, ତାହାର ଏପରି ସାହାସ ଦେଖି ? ରାଜଅନ୍ତଃପୁରର ସେବିକା ହେବା ପାଇଁ ଯାହାର ଜୀବନଟା ଉତ୍ସୃଷ୍ଟ, ନିଜର ଆହାର ବିହାର ଛଡ଼ା ଯେ ଅନ୍ୟ ସୁଖ ଜାଣି ନାହିଁ, ନିଜର ରୋଗ ବ୍ୟଥା ଅପେକ୍ଷା ଯେ ଅପର ଦୁଃଖ ଜାଣେ ନାହିଁ, ସେ ମଧ ଆଜ ଆଉ ଜଣକ ସୁଖରେ ସୁଖୀ ହେବାକୁ ଗ୍ଭହେଁ, ଆଉ ଜଣକ ବ୍ୟଥାକୁ ନିଜର ବୋଲି ଅନୁଭବ କରିବାକୁ ଲୋଡ଼େ ? ରାଜସେବକମାନଙ୍କର କୌତୁକ ପରିହାସକୁ ଯେ ଜୀବନର ଏକମାତ୍ର ଗର୍ବ ବୋଲି ଭାବନ୍ତି, ତାହାର ମଧ ତୁମ ପରି ମାର୍ଜିତ ଲୋକର ପ୍ରଣୟପ୍ରାର୍ଥିନୀ ହେବାକୁ ସାହସ ? କିନ୍ତୁ ସେ ସାହସ ଦେଇଛି ତାକୁ କିଏ ?

ଗଣଭଟ୍ଟ—ହଉ, ମାରୁ, ଯଥେଷ୍ଟ ହୋଇଛି ତୁମ ଶିକ୍ଷା; ଏଥିଭିତରେ ବହୁତ ଦୂର ଆଗେଇ ଯାଇଛ । ତୁମକୁ ମୁଁ ଆଜଠାରୁ ମୋର ପଟ୍ଟଶିଷ୍ୟା ବୋଲି ଜାଣିଲି । କିନ୍ତୁ ଗୋଟିଏ କଥା, ନିଜର ଯାନତା ଉପରେ ତୁମେ ବଡ଼ ବେଶି ନଜର ରଖିଚ । ମତେ ଜାଣ ତ ? ମୁଁ ଭାରତ ସମ୍ରାଟ ଅଶୋକଙ୍କଠାରୁ ନିଜକୁ କୌଣସି ଅଂଶରେ ଶ୍ରେଷ୍ଠ ବୋଲି ଭାବେ ନାହିଁ; ତୁମକୁ ମଧ ଭାରତର ସାମ୍ରାଜ୍ଞୀଙ୍କଠାରୁ···

ମାଦ୍ରୀରକା—କିନ୍ତୁ ରାଜଜେମାଙ୍କୁ ତୁମେ ମୋହଠାରୁ ବେଶି ମର୍ଯ୍ୟାଦା ଦେଖାଅ ।

ଗଣଭକ୍ତ—ତାହାର କାରଣ ତାଙ୍କ ଅପେକ୍ଷା ତୁମ ସହିତ ମୋର ସମ୍ପର୍କ ବେଶି ।

ମାହାରିକା—ଆଉ ଗୋଟିଏ କାରଣ, ସେ ମୋ ପରି ନିଜ ଦୁର୍ବଳତାଟାକୁ ତୁମ ଆଗରେ ଦେଖାଇ ନାହାନ୍ତି । ମୋ ପରି ସ୍ଥିରଆଡ଼ ଶୂନ୍ୟ ଦେଖନ୍ତି ନାହିଁ, ନିଜକୁ ଏତେ ବେଶି ଅସହାୟ ବୋଲି ଭାବନ୍ତି ନାହିଁ ।

ଗଣଭକ୍ତ—ହୋଇପାରେ । ସ୍ନେହ, ପ୍ରୀତି ଦୁର୍ବଳ ଲୋକର ଲକ୍ଷଣ ଛଡ଼ା ଆଉ କଣ କହ ? ଦୁର୍ବଳ କିମ୍ବା ଅସହାୟ ବୋଲି ମନେ ନ କଲେ ନିଜେ ନିଜକୁ ବାନ୍ଧିବାକୁ ଦିବ କାହିଁକି ? କିନ୍ତୁ ଜାଣ ମାରୁ, ଏସବୁ ଖାଲି ଭାବନାର ଫରକ—ଭାବନା ବଳରେ ରାଜ-ରାଜେଶ୍ୱର ମଧ୍ୟ ଦାଣ୍ଡର ଭିକାରିଠାରୁ ଆହୁରି ଦୀନ ଓ ଦୁଃଖୀ ହୋଇପାରେ—ଦାଣ୍ଡର ଫକୀର ମଧ୍ୟ ।

ମାହାରିକା—ସେହି ଭାବନା ବଳରେ ତୁମେ ନିଜ ଗର୍ବରେ ଫୁଲି ରହିଚ । ନିଜ ଛଡ଼ା ଆଉ କେହି ତୁମ ଆଖି ଆଗରେ ପଡ଼ନ୍ତି ନାହିଁ ।

ଗଣଭକ୍ତ—(ମୃଦୁହସି) ତୁମଠାରୁ ଅବଶ୍ୟ ନିଜ ଖବର ମୁଁ ଅନେକ ପରିମାଣରେ ଜାଣିବାକୁ ପାଉଚି, ନିଜକୁ ପୁରୁଷ ବୋଲି ଅନୁଭବ କରୁଚି । ଝିଅମାନଙ୍କ ପାଖରେ ଏ ମୋର ଗୋଟିଏ ବଡ଼ ଲାଭ । କିନ୍ତୁ ତୁମେ ବୋଧହୁଏ ଅନ୍ୟ ପୁରୁଷଙ୍କ ସାଥିରେ ଭଲ କରି ମିଶିନାହଁ । ମିଶିଲେ ଦେଖିବ, ସବୁ ପୁରୁଷପାକ ସମାନ, ଅନ୍ତତଃ ଝିଅମାନଙ୍କ ପାଖରେ । ଖାଲି ମନେ ନୁହେଁ ମାରୁ, ଦେଖିବ, ସମସ୍ତଙ୍କୁ ହୁଏତ ତୁମେ ସମାନ ଭାବରେ ଭଲ ପାଇ ବସିଚ । ଆଉ ସେତେବେଳେ ହୁଏତ ଖାଲି ମୋହର

ଛୁଇଁରେ ତୁମର ଦୁଇଟାଯାକ ଆଖି ଘୋଟଉଠିଇ ହୋଇ ରହିବ ନାହିଁ ।

ମାଳବିକା—ନାହିଁ ଗଣଭଟ୍ଟ । ତୁମକୁ କେବଳ ଭଲ ପାଏ ନାହିଁ, ପ୍ରାଣର ନିଭୃତତମ ଦେଶରେ ଧ୍ୟାନ କରେଁ । ଏ ଜୀବନର ଚୃର ଭାଗରୁ ତିନି ଭାଗ ତୁମେ ଅଧିକାର କରିଛ । ତୁମ ସ୍ପର୍ଶରେ ମୋହର ଜାଗରଣ ମଧ୍ୟ ସ୍ୱପ୍ନ ହୋଇ ଉଠିଛି ଏବଂ ଏହି କଠିନ ପୃଥିବୀଟା ତୁଳା ପରି ହାଲୁକା, କାଚ ପରି ମସୃଣ ଓ ଆକାଶ ପରି ସମତଳ ହୋଇପଡ଼ିଛି । ତୁମେ ମୋହର ମଧୁରତମ ଅଶ୍ରୁ, ମୋର ନିବଡ଼ତମ ରହସ୍ୟ !

ଗଣଭଟ୍ଟ—(ମୃଦୁ ହସି) ଇସ୍, ଏତେବେଶି ? ସେଥିପାଇଁ ଆଜଯାଏ ଏହା ଗୋପନ ରଖିଥିଲ ? କିନ୍ତୁ ମୁଁ ତୁମକୁ ତ ଏପରି ଭଲ ପାଇ ପାରି ନାହିଁ, ଏତେ ମନୋଯୋଗ ଦେଇନାହିଁ !

ମାଳବିକା—(ତିରସ୍କାର ସ୍ୱରରେ) ନା, ତୁମେ ଅତ୍ୟନ୍ତ ସ୍ୱାର୍ଥପର, ନିଜ କଥାକୁହିଁ ବେଶି ଭାବ । ମୁଁ ଯେତେବେଳେ ତୁମ ଭାବନାରେ ବିଭୋର, ସେତେବେଳେ ତୁମେ ନିଷ୍ଠୁର ପରିହାସ କରିଯାଅ । ଯେତେବେଳେ ମୁଁ ତୁମରି ପଥକୁ ଚାହିଁ ବସେ, ତୁମଠାରୁ ପାଏଁ ଅବହେଳା । ମୋହର ଅନ୍ତରର ନୈବେଦ୍ୟକୁ ତୁମେ ଧୂଳିଖେଳ ପରି ପାଦରେ ଠେଲିଦିଅ, ମୋହର ଜୀବନକୁ ତୁମେ ଅବସରର କ୍ରୀଡ଼ା ବୋଲି ଜ୍ଞାନ କର ।

ଗଣଭଟ୍ଟ—(ଉଦ୍ଧାର ଚେଷ୍ଟାରେ) ମତେ ଏତେ ହୀନ ଭାବ ନାହିଁ ମାଳୁ ! ଏ ସବୁ କଥା ମୁଁ ଆଗରୁ ଜାଣେ ।

ମାଳବିକା—(ଆଗ୍ରହ ସହ ଜାଣ ? ତେବେ ମୋ ସାଥିରେ କପଟ କରିଚ ?

ଗଣଭଟ୍ଟ—ନା, ତୁମକୁ ହିଁ ଅକପଟ କରିବାକୁ ଅପେକ୍ଷା କରିଛି, ତୁମରି ମୁହଁରେ ଏ କଥା ଶୁଣାଇବାକୁ ଯାଇଛି । ସେଥିପାଇଁ ଆଜିଯାଏ ତୁମର ଭାବଭଙ୍ଗୀ ଲକ୍ଷ୍ୟ କରୁଥିଲି । କିନ୍ତୁ ତୁମେ ମତେ ଏତେ ଅଧିକ ଭଲପାଅ ଯେ ସେଥିରେ ଆମ ଦୁହିଁଙ୍କର ମିଳନ କିମ୍ବା ବିବାହ ଏକାବେଳେକେ ଅସମ୍ଭବ—ଗାନ୍ଧର୍ବ ନୁହେଁ କି ମାନୁଷୀ ନୁହେଁ; କଥାରେ ଅଛି କଦମ୍ବ, ବେଶି ପାଣିରେ ଚନ୍ଦ୍ର ମରେ ।

ମାହାରିକା—ହୋଇପାରେ, କିନ୍ତୁ ମୋର ପୂଜାର ଅର୍ଘ୍ୟକୁ ଅସମ୍ମାନ କରିବାର ଅଧିକାର ତୁମର ନାହିଁ । ମୋହର ପ୍ରୀତିର ମର୍ଯ୍ୟାଦାକୁ କ୍ଷୁଣ୍ଣ କରି ତୁମେ ନୀରସ ବିବାହରକଥା ଆଲୋଚନା କରୁଛ । ଫୁଲଟିଏ ଦେଖି ତୁମର ଆନନ୍ଦ ଜନ୍ମେ ନାହିଁ, ଆହାର କରିବାପାଇଁ କ୍ଷୁଧା ବଢ଼େ ।

ଗଣଭଟ୍ଟ—ପ୍ରୀତି ! ବିବାହ କଥା ନ ଭାବି ପ୍ରୀତି କରିବା ଯେ ଅପରାଧ ! କାରଣ ତାହା ଦେବତାଙ୍କଠାରେ ଶୋଭା ପାଏ, ମନୁଷ୍ୟଠାରେ ନୁହେଁ । ପୁରୁଷ ପକ୍ଷରେ ଏହା ସମ୍ଭବ ହୋଇ-ପାରେ, କିନ୍ତୁ ସ୍ତ୍ରୀ ପକ୍ଷରେ ନୁହେଁ । ସତକରି କହ ତ ନାରୀ, ତୁମେ କଣ ଖାଲି ଧ୍ୱନି ଚାହଁ, ରୂପ ନୁହେଁ ? କେବଳ ଗାନ, ଗାୟକ ନୁହେଁ ? ମିଥ୍ୟା କଥା— ନାରୀ ଯେ ସବୁବେଳେ ନିଜ ଆଗରେ ଜଣେ ପୁରୁଷକୁ ଦେଖିବାକୁ ଚାହେଁ, ପୁରୁଷକୁ ଛାଡ଼ି ନିଜକୁ କଳ୍ପନା କରିବା ଯେ ତାହା ପକ୍ଷରେ ଭୟଙ୍କର—ପୁରୁଷ ହିଁ ତାହାର ସର୍ବଶ୍ରେଷ୍ଠ ସ୍ୱାଧୀନତା !

ମାହାରିକା—ସତେ ନା ? ସେଇଥିପାଇଁ ପୁରୁଷ ତାକୁ ଏପରି ଅବହେଳା କରେ ?

ଗଣଭକ୍ତ—ପୁରୁଷ ଧାଇଁଚି ଆଗରେ ଏବଂ ନାରୀ ତାହାର ସବୁ ପୂଜା ଅର୍ଘ୍ୟ ଘେନି ପଛରେ । ସେଇଥିପାଇଁ ନାରୀ ଦେଖେ ପୁରୁଷର ପଛପାଖଟା, ଆଉ ପୁରୁଷ ପଛକୁ ଚାହିଁ ଦେଖେ ରୂପ ଏବଂ ଆଗକୁ ଚାହିଁ ଅରୂପ । ସୁତରାଂ କେହି କାହାକୁ ବୁଝିପାରେ ନାହିଁ ।

ମାଳବିକା—ମୁଁ ତୁମକୁ ବୁଝିବାକୁ ଚାହେଁନାହିଁ, ତୁମର ଚରିତ୍ର ବିଶ୍ଳେଷଣ ମୋହର ଲୋଡ଼ା ନୁହେଁ । ତୁମେ ଚପଳ ହୁଅ, ସ୍ଖଳିତ ହୁଅ, ସେ କ୍ଷତି ମୋହର ନୁହେଁ—ତୁମର ।

ଗଣଭକ୍ତ—ହଁ, ଏ କଥା ଆଜି ପନ୍ଦର ବର୍ଷର ମାଳବିକା ଚାଳିଶ ବର୍ଷର ଗଣଭକ୍ତକୁ କହିପାରେ । କିନ୍ତୁ ପଚିଶ ବର୍ଷର ମାଳବିକା ସଙ୍ଗେ ପଚାଶ ବର୍ଷର ଗଣଭକ୍ତର କି ଅଭିନୟ ହେବ, ଭାବିଚ କି ମାରୁ ?

ମାଳବିକା—ବର୍ତ୍ତମାନ ଉପରେହିଁ ମୁଁ ଦୃଢ଼ ହୋଇ ଦଣ୍ଡାୟମାନ —ଭବିଷ୍ୟତ ପାଇଁ ଚିନ୍ତା ନୁହେଁ ।

ଗଣଭକ୍ତ—(ବିଦ୍ରୂପର ହାସ୍ୟ ହସି ) ତାହାହେଲେ ତୁମ ପ୍ରେମ ଦେଶକାଳକୁ ଅତିକ୍ରମ କରିଅଛି । ସେହି ନିଷ୍କାମ ପ୍ରେମକୁ ଘେନି ତୁମେ ତେବେ ତୃପ୍ତ ରହ, ପୁରୁଷ ସଙ୍ଗେ ମିଳାମିଶା କିମ୍ବା ବିବାହ କରିବାର ସ୍ୱପ୍ନ ଦେଖନାହିଁ ।

ମାଳବିକା—କାହିଁକି ? ପୁରୁଷକୁ ଯେଉଁମାନେ ବିବାହ କରନ୍ତି ସେମାନଙ୍କର କଣ ପ୍ରେମ ଲୋଡ଼ା ନୁହେଁ ।

ଗଣଭକ୍ତ—(ସେହିପରି ହସି) ଖୁବ୍ କମ୍ । ପ୍ରୀତିଟା ଅତି ବେଶି ହେବା ବରଂ ଅନିଷ୍ଟ ।

ମାଳବିକା—(ବିସ୍ମିତ ହୋଇ) ଅନିଷ୍ଟ

ଗଣଭଞ୍ଜ—ହିଁ ମାରୁ, ବିବାହ କରନ୍ତୁ—ଲୋକେ ଭଲପାଇବାକୁ ନୁହେଁ, କଜିଆ କରିବାକୁ ।

ମାହାରିକା—(ଗଣଭଞ୍ଜଙ୍କର ମୁହଁକୁ ଚାହିଁ କଲ ପରି ଛାତ୍ର ଅଥଚ କାତର ଦୃଷ୍ଟିରେ) ଇସ୍ ! ଭାରି ତ ସାହାସ ! ମତେ ଆଘାତ କରି ଆପଣ ବଡ଼ ହେବାକୁ ଚାହାନ୍ତି । ମୁଁ ତାହା କରାଇଦେବି ନାହିଁ । ଲଜ୍ଜାରେ ମୋତେ ନୁଆଁଇ ଦେବେ ? ଦୁଇ ହାତରେ ମୁଁ ମୁହଁ ଲୁଚେଇ ନାହିଁ । ଏ ଛାତିରେ ମୋର ଅପମାନର ଅଗ୍ନି ଜାଳିବେ ? ସହଜରେ ତାକୁ ମୁଁ ନିଭାଇପାରେ ।

ଗଣଭଞ୍ଜ—(ପରିହାସ ସ୍ୱରରେ) ସବୁ କଥାଗୁଡ଼ାକ କହିପକାଇ ଭଲ କରିଚ ମାରୁ ! ନ ହେଲେ ଏମିତି ସିନା ଛାତିରେ ଅଗ୍ନି ଜଳୁଚି, ସେମିତି ପେଟରେ ହୁଅନ୍ତା ଅଗ୍ନିମାନ୍ଦ୍ୟ । ବାସ୍ତବିକ ତୁମକୁ ଏପରି ସିଧା ଦେଖି ମୋହର ନାଚି ଉଠିବାକୁ ମନ ହେଉଚି । ସତେ ତ, ତୁମ ପାଖରେ ମୁଁ ଆଜି ବଡ଼ିମା ଦେଖାଇବି କଣ ? ତେବେ ଏତିକି ଯେ 'ତୁମେ' ସମ୍ବୋଧନରୁ ପୁଣି ଯାଙ୍ଗେ ଯାଙ୍ଗେ 'ଆପଣ' ହୋଇ ପଡ଼ିଚ ।

ମାହାରିକା—ପରିହାସ ରଖନ୍ତୁ । ଏ କଥା ଆଜି କାହା ଆଗରେ କହିବେ ନାହିଁ ।

ଗଣଭଞ୍ଜ—ଛି, ଛି, ଏ ବିଶ୍ୱାସ କଥାଗୁଡ଼ିକ ଆଜି କାହାକୁ କୁହାଯାଏ ! କିନ୍ତୁ ଆଗରୁ ଖାଲି ଜଣଙ୍କ ପାଖରେ କହିଚି—ସେ ଅବଶ୍ୟ ମୋର ବଡ଼ ବିଶ୍ୱାସୀ ଲୋକ ।

ମାହାରିକା—(ଦୁଃଖ ଓ ବିସ୍ମୟରେ) କଣ କହିଛନ୍ତି ?

ଗଣଭଞ୍ଜ—(ନିର୍ବିକାର ଭାବରେ) ଆଉ କିଛି ନୁହେଁ—ଏଇ ଯାହା ତୁମ ମୋ ଭିତରେ ଟିକିଏ ସ୍ନେହ ସମ୍ପର୍କ—କିପରି ଆମେ ପରସ୍ପରଠାରେ ମୁଗ୍ଧ—ମୁଁ ତୁମକୁ କିପରି ଦୃଷ୍ଟିରେ ଦେଖେ,

ଆଉ ତୁମେ ମଧ୍ୟ ମୋତେ କପଟ—କପଟ ଆମେ ଦୁହେଁ ଦୁହିଁଙ୍କୁ ଡାକୁ, କପଟ ହସ କୌତୁକ, ସ୍ନେହ ସୋହାଗ···

ମାହାରକା—(ବିରକ୍ତିରେ) କିନ୍ତୁ ଏ ବିଷୟରେ ତ ମୋହର ଆପଣଙ୍କ ସାଥିରେ ଆଜ କେବଳ କଥାବାର୍ତ୍ତା ?

ଗଣଭଞ୍ଜ—(ଶାନ୍ତ ଭାବରେ) ନାହିଁ ମାରୁ, ଏଥି ପୂର୍ବେ ମଧ୍ୟ ହୋଇଛି, ସେ ଅବଶ୍ୟ ମୋହର ଚିନ୍ତା-ରାଜ୍ୟରେ । କିନ୍ତୁ ସେ କଥାବାର୍ତ୍ତା ଆଜଠାରୁ ଆଉରି ଚମତ୍କାର, ସେ ଅଭିନୟ ଏହା ଅପେକ୍ଷା ଅଧିକ ସତ୍ୟ । ଦିନ ନାହିଁ, ରାତି ନାହିଁ, ଏକା ଏକା କେତେ ଚିତ୍ର ମୁଁ ମନେ ମନେ ଆଙ୍କିଛି । କେତେ ଅସମ୍ଭବ ଗଳ୍ପ କରିଛି ତୁମ ସାଥିରେ ।

ମାହାରକା—(ଖିନ୍ନ ହୋଇ) ଆଉ ସେହି ମିଛ କଳ୍ପନାକୁ ଆପଣ ଅନ୍ୟ ଲୋକ ଆଗରେ ବଖାଣ କରିଛନ୍ତି !

ଗଣଭଞ୍ଜ—ଆଉ କେହି ବାହାରର ନୁହେଁ ମାରୁ, ଆମରି ଭିତରର ଲୋକ ।

ମାହାରକା—ଆମରି ଭିତରର ?

ଗଣଭଞ୍ଜ—(ଆଶ୍ୱସ୍ତ ସ୍ୱରରେ) ହଁ, ତୁମର ମଧ୍ୟ ଜଣାଶୁଣା ଲୋକ; ସେ ଆମ ରାଜଜେମାଙ୍କର ଦାସୀ ।

ମାହାରକା—ଦାସୀ !

ଗଣଭଞ୍ଜ—ଖାଲି ଦୁଇଟି ହାତ ଓ ଦୁଇଟିଗୋଡ଼ ଛାଡ଼ିଦେଲେ କମଳା ଲେମ୍ବୁ ପରି ଲାଲ ଗୋଲ ଚେହେରା । ନାଁ'ଟି କଣ ତାହାର ? ତୁଳସୀ ପରା ? ରୂପର ବେଶ ଜୌଲ ଅଛି, ନୁହେଁ ?

ମାହାରକା—(ଆକାଶରୁ ପଡ଼ି) ତୁଳସୀ ଆଗରେ ମଧ୍ୟ ଆପଣ ଏ ସବୁ କଥା କହିଛନ୍ତି ?

ଗଣଭଞ୍ଜ—ହଁ, କାରଣ ତାକୁ ମଧ୍ୟ ମୁଁ ଟିକଏ ପ୍ରୀତି···ବୁଝିଲ ? ଆଚ୍ଛା ଝିଅଟିଏ—ଟିକଏ ଯାହା ବେଶି କଥା ଗପେ, ନ ହେଲେ—

ମାହାରକା—(ବିରକ୍ତ ଓ ଘୃଣାରେ) ଛିଃ, ଆପଣଙ୍କ ପାଖରେ ବସି ପାରିବ ନାହିଁ । (ସହସା ଉଠିଯାଇ ଫାଟକ ଆଡ଼କୁ ଚାଲିଲା; ଗଣଭଞ୍ଜ ମଧ୍ୟ ଆସନ ଛାଡ଼ି ମୃଦୁଗତିରେ ତାର ପଛେ ପଛେ ଚାଲିଲେ । )

ଗଣଭଞ୍ଜ—(କୌତୁକ ଓ ସ୍ନେହମିଶା ସ୍ୱରରେ) ଆଜ ଜୋହ୍ନାଟା ଭାରି ସୁନ୍ଦର ହୋଇଚି, ନୁହେଁ ମାରୁ ? ଆକାଶଟା ତୁମ ବେଣୀ-ଠାରୁ ଅଧିକ ନୀଳ, ଆଜ ଏହି ପ୍ରକାଣ୍ଡ ନେଳୀ ପର୍ଦ୍ଦା ତଳେ ନିକଟରେ ଏହି ଅଶ୍ୱତ୍ଥ ଡାଳ ଉପରେ ଶରତ୍‌ର ସ୍ନିଗ୍ଧ ଚନ୍ଦ୍ରଟି ଝୁଲି ପଡ଼ିଚି ଏବଂ ସେହି ତଳେ ରାଜବଗିଚାର ଅସଂଖ୍ୟ ଫୁଲଗଣି ଭିତରେ ଗୋଟାଏ ବିଚିତ୍ର ଅଭିନୟ । (ମାହାରକା ମୁହଁ ବଙ୍କାଇ ଗଣଭଞ୍ଜଙ୍କୁ ଚାହିଁବାରୁ ଅଧିକ ଉତ୍ସାହରେ) ମାହାରକାର ଶୁକ୍ଳାଭିସାର, ଗଣଭଞ୍ଜର ପ୍ରବେଶ ଓ ମାହାରକାର ମାନଭଞ୍ଜନ—ଏହି ଜୋହ୍ନା ତଳେ, ଜୁଈ, ମାଳତୀର ଗନ୍ଧ-ସେବିତ ତୁମର ଚକୁର ଭାରି—ବଡ଼ ଚମତ୍କାର, ନା ? (ଫାଟକ ପାଖରେ ସଂଘମିତ୍ରାଙ୍କୁ ଦେଖି ମାହାରକା ହଠାତ୍ ଠିଆହୋଇ-ଗଲା ଏବଂ ଗଣଭଞ୍ଜ ତାହାର ଆଗକୁ ଚାଲିଯାଇ ପୂର୍ବ ସ୍ୱରରେ) ପୁଣି ଏହି ଦେଖ—ରାଜଜେମା ସଂଘମିତ୍ରାଙ୍କର ପ୍ରବେଶ ଓ ମାହାରକା ସଙ୍ଗେ ମିଳନ ଏବଂ ଗଣଭଞ୍ଜଙ୍କର ପ୍ରସ୍ଥାନ । (ଫାଟକ ଆଡ଼କୁ ଚାଲିଗଲେ )

ସଂଘମିତ୍ରା—(ଫାଟକ ଖୋଲି ଭିତରକୁ ଆସି) ଏତେ ଚଞ୍ଚଳ ଫେରି ଯାଉଛନ୍ତି ? ବସନ୍ତୁ ଟିକଏ ।

ଗଣଭଣ୍ଡ—ନାହିଁ ଜେମା, ମହାରାଜାଙ୍କ ପାଖରେ ହାଜର ହେବାକୁ ପଡ଼ିବ । କାଲି ଯୁଦ୍ଧଯାତ୍ରା ପାଇଁ ତୁମ୍ଭମାନଙ୍କୁ ଖାଲି ମନେ ପକାଇ ଦେବାକୁ ଆସିଥିଲି । କିନ୍ତୁ ମାହାରିକାଙ୍କୁ ଏକା ଦେଖି ଟିକିଏ ଖୁସିଗପ କରିବାରେ ଡେରି ହୋଇଗଲା ।

ସଂଘମିତ୍ରା—( ମାହାରିକାଙ୍କୁ ଚାହିଁ ମୃଦୁ ହସି ) କିନ୍ତୁ ମାହାରିକାଙ୍କ ମୁହଁ ତ କାହିଁକି ଖଟା ଖାଇଲା ପରି ଫିଟା ଦିଶୁଚି । କଣ କହିଲେ କି ତାଙ୍କୁ ?

ଗଣଭଣ୍ଡ—(କୌତୁକ ଦୃଷ୍ଟିରେ ଦୁହିଁଙ୍କୁ ଚାହିଁ) ମାହାରିକାଙ୍କର ଏକା ଜିଦ୍ ମତେ ଏଇ ମୁହୂର୍ତ୍ତରେ ବାହା କରିବେ । ମୁଁ କିନ୍ତୁ କହେ, କଳିଙ୍ଗ-ଯୁଦ୍ଧଟା ଶେଷ ହେଉ, ତା' ପରେ ଦେଖିବା । ଏତିକ କଥା ନା ଆଉ କଣ ମାରୁ—ମିଛ କହିଲି ? ତମେ ତାଙ୍କୁ ଟିକିଏ ବୁଝେଇ ଦେବ ତ ଜେମା !

(ହସି ହସି ପ୍ରସ୍ଥାନ)

ମାହାରିକା—ସତେ ଜେମା, ଏମିତି ଲୋକ ମୁଁ ଆଉ ଜଣେ ହେଲେ ଦେଖିନାହିଁ । ଚେଙ୍ଗ ମାଛଠାରୁ ବେଶି ଚାଇଁ । ଆଙ୍ଗୁଠିସନ୍ଧାରେ ଖସି ପଳେଇବେ ।

ସଂଘମିତ୍ରା—ତୁମକୁ ବି ଆଉ ବେଳ ମିଳେ ନାହିଁ ମାରୁ ! କାଲି କଳିଙ୍ଗ-ଯୁଦ୍ଧ, ତୁମର ଆଜି ତର ସହୁ ନାହିଁ କୌତୁକ କରିବାକୁ !

ମାହାରିକା—ମୋର ତ ବାଜି ଗରଜ । ସେ ଆପେ ଆସି କୌତୁକ କରୁଥିଲେ ନା—କିଏ ତାଙ୍କୁ ଡାକିଯାଇଥିଲା କି ?

ସଂଘମିତ୍ରା—ତମେ ମଧ୍ୟ ତାଙ୍କ ସାଥିକୁ ଜଣେ । ମୁଁ ପଚେ ତେଣେ କଣ ଯିବ କଣ ନାହିଁ, ସଜାଡ଼ିବାରେ ହଇରାଣ, ତୁମର ଏଣେ

ଉଦ୍ୟାନବିହାର ଚାଲିଛି । କେତେ ବର୍ଷ ହେଲେ ତମର ନାଁ ବାଳକ ଦୋଷ କଟିବ କେଜାଣି ?

ମାହାରିକା—(ମୃଦୁ ହସି) ଜେମା ବିଜେ କରିବେ ବୋଲି ଏଠାରେ ପରା ମୁଁ ଆସନ ସଜାଉଥିଲି ! ମଝିରେ ଆସି ସେ କୁଆଡ଼ୁ ହାଜର ହେଲେ । ତାଙ୍କ କଥା ତ ଜେମା ଜାଣନ୍ତି—ଆକାଶରୁ ଚୋରି କଥା କହିବେ ।

ସଂଘମିତ୍ରା—ହଉ, ହଉ, କଳିଙ୍ଗ ଯିବାକୁ ଇଚ୍ଛା ଅଛିଟି ?

ମାହାରିକା—(ଲୋଲୁପ ହୋଇ) ଯିବନି ? ଏତେ ସୁନ୍ଦର ଦେଶ କଳିଙ୍ଗ—ଆଉ କଣ କେବେ ଯିବାପାଇଁ ସୁବିଧା ହେବ ? (ଆସନ ପାଖକୁ ଆସି ଦୁଇ ସଖୀ ବସିଲେ ।)

ସଂଘମିତ୍ରା—ବାଃ, ନ ଦେଖିବା ଆଗରୁ ତ ସୁନ୍ଦର ବୋଲି ଜାଣି-ସାରିଲଣି !

ମାହାରିକା—ହଁ ଜେମା, ଶୁଣିଛୁ, ତାହାର ହ୍ରଦ ପାହାଡ଼ ଯେମିତି ସୁନ୍ଦର, ଶିଳ୍ପ ଓ ସାହିତ୍ୟ ମଧ୍ୟ ସେହିପରି । ସେ ଦିନ ପରା ଗୁରୁଦେବ କହୁଥିଲେ—

ସଂଘମିତ୍ରା—ଶୁଣିବା କଥାଗୁଡ଼ାକ ପ୍ରାୟ ସୁନ୍ଦର ହୋଇଥାଏ; କିନ୍ତୁ ନ ଦେଖିଲା ଓଜ ଛଅ ପଣ୍ଡା ।

ମାହାରିକ—ଆପଣ ତ କଳିଙ୍ଗ-ରାଜପୁତ୍ରଙ୍କୁ ଦେଖିଛନ୍ତି—ଘୋଡ଼ା ଦୌଡ଼ରେ ପ୍ରତିଯୋଗୀ ହୋଇ ସେଥର ପରା ସେ ମଗଧକୁ ଆସିଥିଲେ···

ସଂଘମିତ୍ରା—କିଏ···ଜୟପାଳ ? ହଁ, ତାଙ୍କୁହିଁ ଦେଖିବାରେ ଯାହା କଳିଙ୍ଗ ଦେଖା ହୋଇଛି । (ମୃଦୁ ହସି) ସେଥର ସେଇ ରସକୂଟ ପାହାଡ଼ କଥା ମନେ ପଡ଼େ ନାହିଁ ?

ନୀହାରିକା—ହଁ ଜେମା; ଆପଣ ଦୁର୍ଦ୍ଧର୍ଷ ଘୋଡ଼ା ଉପରେ ସେହି ପାହାଡ଼ ଭିତରେ କାହିଁ ହଜିଗଲେ, ଆମେ ସବୁ ଏଣେ ଖୋଜି ଖୋଜି ଛାନିଆ । ତେବେ ଶୁଣୁଛ, ଯେଉଁ ଜାଗାରେ ଆମ ଗୁଡ଼ଜଣୀ ପଡ଼ିବ, ସେ ସ୍ଥାନଟି କୁଆଡ଼େ ଚିତ୍ରକୂଟ ପରି ଭାରି ସୁନ୍ଦର—ଗ୍ରେଷ୍ଟ ପାହାଡ଼ଟିଏ, ଆଉ ତାହାର ତଳେ କୁଆଡ଼େ ଅଛି ଟେସ୍ଟ ଗୋଟିଏ ନଈ—

ସଂଘମିତ୍ରା—ନୂଆ ଜାଗାକୁ ଯିବା ଆଗରୁ ତୁମେ ତାକୁ ଏପରି ଭାବରେ କଳ୍ପନା କରିଥାଅ ଯେ ସେଠାରେ ପହଞ୍ଚିଲେ ହତାଶ ହେବାକୁ ପଡ଼ିବ ।

ନୀହାରିକା—କିନ୍ତୁ ଆମ ଗୁରୁଦେବ ତାକୁ ଏମିତି କ୍ଷୁଣ୍ଣ କରି କହନ୍ତି ଯେ, ଯିବା ଆଗରୁ ଅଧେ ଉତ୍ସାହ ଭାଙ୍ଗିଯାଇଥିବ ।

ସଂଘମିତ୍ରା—'ଯାହାହେଉ ତାଙ୍କରି ଚେଷ୍ଟାରେ ଏଥର ଆମେ ଯାଉ-ଥାଇଁ । ଜାଣନା, ନ ହେଲେ ମହାରାଜାଙ୍କର ଯେମିତି ଖିଆଲ୍, ସହଜରେ କଣ ଅନୁମତି ମିଳିଥାନ୍ତା ? ସେଥର ତକ୍ଷଶିଳା ଗଲାବେଳେ ଦେଖିନ ?

ନୀହାରିକା—(କୁଟୀଳ ହାସ୍ୟରେ) ମହାରାଜାଙ୍କ ଅନୁମତି ପାଇଁ କଣ ଜେମା ଅପେକ୍ଷା କରୁଥିଲେ କି ? କଳିଙ୍ଗର ଜୟପାଳଙ୍କ ସାଥିରେ ଯେ ଆମ ପଣାଖେଳ ହେବ, ବଣଭୋଜି ହେବ ! କିନ୍ତୁ ଜେମା, ସେଠାରେ ଯେମିତି ଆପଣ ହଜି ନ ଯାନ୍ତୁ !

ସଂଘମିତ୍ରା—(ମୃଦୁ ହସି) ସେଥିପାଇଁ ମୋର ଭୟ କଣ ? ତୁମେ ସବୁ ତ ଅଛ ଖୋଜି ବାହାର କରିବାପାଇଁ ! (ଦୂରରୁ ଗୋଟିଏ କ୍ଷୀଣ ସଙ୍ଗୀତ ସ୍ୱର ଶୁଣାଗଲା, କିନ୍ତୁ ଉଭୟେ ସେଥିପ୍ରତି ଅମନୋଯୋଗୀ ।)

ନୀହାରିକା—କିନ୍ତୁ ମଗଧର ଘାଟବାଟ ଆମମାନଙ୍କୁ ଜଣାଅଛି, କଳିଙ୍ଗର ତ ନୁହେଁ ! ସତେ ଜେମା, ଆମ ମହାରାଜାଙ୍କ ଅମଳରେ ଖାଲି ଯୁଦ୍ଧ ଦେଖି ଦେଖି ବିରକ୍ତି ଲାଗିଲାଣି । କଳିଙ୍ଗରେ ଯୁଦ୍ଧ ନ ହୋଇ ଖାଲି ଖେଳ ହୁଅନ୍ତା କି ! ଶିକାର, ଘୋଡ଼ ଦୌଡ଼, ଲୁଚକାଳି...

ସଂଘମିତ୍ରା—ବାଃ, ଘର ତ ତୁମର ସଉକ ! ସ୍ରେଫ ଖେଳରେ ମଣିଷର ମନ ବୁଝେନାହିଁ, ଜାଣ ? ସେଥିପାଇଁ ସେ ଚାହେଁ ହତ୍ୟା, ଯୁଦ୍ଧ, ରାଜ୍ୟଶାସନ । ଆମର ଏ ସବୁରେ ଥାଏ କଣ ? ଆମକୁ ଖାଲି ନଅରର ପାଚେରି ବେଢ଼ ଭିତରୁ ଟିକିଏ ମୁକ୍ତି ମିଳିଲେହିଁ ହେଲା ।

ନୀହାରିକା—କିନ୍ତୁ ଏ ଯୁଦ୍ଧରେ କିଏ ହାରିବ, କିଏ ଜିତିବ କେ ଜାଣେ ?

ସଂଘମିତ୍ରା—ମଗଧ ନିଶ୍ଚୟ ଜିତିବ । କାହିଁକି ନା, ତାହାର ରାଜ୍ୟଲିପ୍‌ସା ଅଛି । ସେ ମାରିବାକୁ ଚାହେଁ, ଅଥଚ କଳିଙ୍ଗ ଖାଲି ବଞ୍ଚିଗଲେ ଖୁସି ।

ନୀହାରିକା—ହଁ ଆମ ମହାରାଜାଙ୍କ କୋଷ୍ଠୀରେ କୁଆଡ଼େ ପରାଜୟ ଜମାରୁ ନାହିଁ । ଯେ ଜିତୁ, ସେଥିରେ ଆମର ଯାଏ କେତେ ଆସେ କେତେ ? (ଦୂରରୁ ସେହି ସଙ୍ଗୀତର ସ୍ୱର ଭାସି ଆସିଲା ।)

ସଂଘମିତ୍ରା—(ପରିହାସରେ) ତୁମକୁ ଖାଲି ଗୁରୁଦେବଙ୍କ ସାଙ୍ଗେ କୌତୁକ କରିବାକୁ ସୁବିଧା ମିଳିଲେ ହେଲା, ନୁହେଁ ?

ନୀହାରିକା—ଜେମାଙ୍କ ସାଥିରେ ଜୟପାଳଙ୍କ ଭେଟ ନ ହେଲେ ମୁଁ ଆଉ ତାଙ୍କୁ ମୁହଁ ଦେଖାଇବି ? କଦାପି ନୁହେଁ । ଆଜି ତାଙ୍କ ସାଥିରେ ମୋର ଯେଉଁ ଭାବ ! ଭେକ ବକଳରେ ଖାଲି ଚାଟିଆ

କାମୁଡ଼ିବା ପରି । (ପରିଚାରିକା ତୁଳସୀର ପ୍ରବେଶ ଓ ଅଭିବାଦନ ।)

ତୁଳସୀ—ଜେମାଦେଈ ! ଜଣେ ଅନ୍ଧ ଭିକ୍ଷୁ ଆସିବାକୁ ଚାହାନ୍ତି ।

ସଂଘମିତ୍ରା—ଅନ୍ଧ ଭିକ୍ଷୁ ? ଆଚ୍ଛା ଡାକିଆଣ । ( ତୁଳସୀର ପ୍ରସ୍ଥାନ )

ନୀହାରିକା—କିନ୍ତୁ ଏଠାରେ ସେ ସାକ୍ଷାତ କରିବେ ?

ସଂଘମିତ୍ରା—(ମୃଦୁ ହସି) ଶୁଣିଲ ତ ଅନ୍ଧ ଭିକ୍ଷୁ—ତାଙ୍କର ଆଉ ସାକ୍ଷାତ୍ କଣ ? ମୁଣ୍ଡ ନ ଥାଇ ମୁଣ୍ଡବ୍ୟଥା ।

(ଭିକ୍ଷୁବେଶରେ ଅନ୍ଧ କୁନାଳଙ୍କର ପ୍ରବେଶ । ଧର୍ମପାଳଙ୍କ ପରି ଲଣ୍ଡିତ-ମସ୍ତକ ଏବଂ ଦେହରେ ଗେରୁଆ ଲମ୍ବା ଆଲଖେଲ୍ଲା । ଦେହଟାକୁ ପୀଡ଼ିତ କଲେ ମନଟା ସବଳ ହୁଏ ବୋଲି ତାଙ୍କର ଧାରଣା, ସୁତରାଂ ତାଙ୍କର ଯୋଦ୍ଧାର ମାଂସପେଶୀ ବର୍ତ୍ତମାନ ଶୀର୍ଣ୍ଣ । ଏହା ଉପରେ ତାଙ୍କର ଚକ୍ଷୁହୀନତା ମୁଖର ପରିଚୟକୁ ବଦଳାଇ ଦେଇଅଛି । ସେଥିପାଇଁ ଅତି ଶୈଶବରୁ ଘନିଷ୍ଠ ଜଣାଶୁଣା ଥିଲେହେଁ ସଂଘମିତ୍ରା କିମ୍ବା ନୀହାରିକା ପକ୍ଷରେ ବର୍ତ୍ତମାନ ତାଙ୍କୁ ହଠାତ୍ ଚିହ୍ନି ପାରିବା କଠିନ । ଦେହଟାକୁ କନ୍ଦାଇବାକୁ ଯାଇ ସେ ନିଜେ ସବୁବେଳେ ହସିବାକୁ ଚାହାନ୍ତି । କିନ୍ତୁ ଆଖି ଦିଓଟି ନ ଥିବାରୁ ତାଙ୍କର ହାସ୍ୟ ଓ କଥା ଉଦ୍ଦେଶ୍ୟହୀନ ପରି ମନେ ହୁଏ । ତୁଳସୀ ଆଗେ ଆଗେ ତାଙ୍କୁ ବାଟ କଢ଼ାଇ ଆଣିଲା ଏବଂ କୁନାଳ ମଧୁର କଣ୍ଠରେ ଗୀତ ଗାଇ ପ୍ରବେଶ କଲେ )

ତୁମରି ଆଲୋକ ଅନ୍ଧ କରିଛି ନୟନ,
ପ୍ରିୟ ହେ, ପ୍ରିୟ ହେ ।
ତୁମରି ପବନ ଅଙ୍ଗ କରିଛି ଦହନ,
ପ୍ରିୟ ହେ, ପ୍ରିୟ ହେ ।

ତବ ବାଣୀ ମତେ କରିଅଛୁ ମୂକ
ପରଶ ତୁମରି ଦେଇଅଛୁ ଦୁଃଖ
ସଙ୍ଗୀତ ତବ ବଧିର କରିଛୁ ଶ୍ରବଣ,
ପ୍ରିୟ ହେ, ପ୍ରିୟ ହେ ।

(କୁନାଳଙ୍କୁ ନିକଟବର୍ତ୍ତୀ ଦେଖି ଉଭୟ ସଂଘମିତ୍ରା ଓ ନୀହାରିକା ଆସନ ଛାଡ଼ି ଠିଆହେଲେ । )

ତୁଳସୀ—(କୁନାଳଙ୍କୁ ସଂଘମିତ୍ରାଙ୍କର ସମ୍ମୁଖକୁ ଆଣି) ରାଜକୁମାରୀ ଏବଂ ତାଙ୍କ ସଖୀ ନୀହାରିକା ।

ସଂଘମିତ୍ରା ଓ ନୀହାରିକା—(ନମସ୍କାର କରି) ଉଭୟେ ଭିକ୍ଷୁଙ୍କ ପ୍ରତି ପ୍ରଣତି ଜଣାଉଅଛୁଁ ।

କୁନାଳ—ଚିରନ୍ତନ ତଥାଗତ ତୁମର ମଙ୍ଗଳ କରନ୍ତୁ ।

ସଂଘମିତ୍ରା—ତୁଳସୀ ! ଭିକ୍ଷୁଙ୍କୁ ଆସନ ଦେ । (ତୁଳସୀ କୁନାଳଙ୍କୁ ଗୋଟିଏ ଆସନରେ ବସାଇବା ପରେ ସଂଘମିତ୍ରା ଓ ନୀହାରିକା ସେହି ଆସନରେ ବସିଲେ )

କୁନାଳ—(ମୃଦୁ ହସି) ଏଠାରେ ତେବେ ଜେମାଙ୍କ ଛଡ଼ା ଆଉ କେହି ନାହାନ୍ତି ? କେବଳ ତାଙ୍କର ସଖୀ ନୀହାରିକା ?

ସଂଘମିତ୍ରା—ନା, ଆଉ କେହି ନାହାନ୍ତି । (ଦାସିପ୍ରତି) ତୁ ଏଥର ଯା ତୁଳସୀ !

ତୁଳସୀ—ଆଜ୍ଞା ମଣିମା ! କିନ୍ତୁ ଏଙ୍କୁ ତ ପୁଣି ବାଟ କଢ଼ାଇ ନେବାକୁ ହେବ ? ଆସିଲାବେଳେ ପରା ଭୁଲରେ ଆମ ଅନ୍ତଃପୁର ଭିତରକୁ ପଶିଯାଉଥିଲେ ।

ନୀହାରିକା—ହଉ, ହଉ, ତତେ ଆଉ ବାକ୍ୟ ବନେଇବାକୁ ହେବ ନାହିଁ । ପୁଣି ଦରକାର ହେଲେ ତତେ ଖବର ଦେବୁଁ ।

ତୁଳସୀ—କାହିଁକି ତମେ ଟିକଏ ବାଟ କଡ଼େଇ ନେବ ନାହିଁ ? ଏଇଠୁ ଏତକ ଆସୁ ଆସୁ ତ ମୋ ଦେହ ପାଣି ଫାଟିଗଲାଣି । ପୁରୁଷ ମଣିଷଙ୍କୁ ସାଥିରେ ନେଇ ଆସିବା ଖାଲି ସହଜ ପଡ଼ୁଚ ପରା !

ନୀହାରିକା—ଉଃ, ତୋହର ଏକା ଭାରି ସାହାସ ! ଯା, ଯା, ଆଉ ଏତେ ଫଦେଇ ହେବା ଦରକାର ନାହିଁ । ପୁରୁଷ ଲୋକଙ୍କୁ ଆଉ ଯେମିତି କେହି ଦେଖିନାହିଁ !

ତୁଳସୀ—ଦେଖି ନ ଥିବ କାହିଁକି—ତା ପାଖ କଣ ଆଉ ମାଡ଼ୁଚ ?

ନୀହାରିକା—ନାଃ, ତୋ ଦେହରେ ବେଶି ମାଉଁସ ଅଛି ନା, ସେଥି-ପାଇଁ ତୋର ଡର ! ପୁରୁଷ ଯେମିତି ବାଘ-ଭାଲୁ !

ତୁଳସୀ—ବାଘ ଭାଲୁ ?

ସଂଘମିତ୍ରା—ଯା ତୁଳସୀ ! ତତେ ଏଠାରେ ଗପ ଆରମ୍ଭ କରିବାକୁ କେହି ଡାକି ନାହିଁ ।

ତୁଳସୀ—ଯାଉଛି, ଜେମା ! ନୀରୁ ଦେଈ ପରା ଗୁଳାଗଲା ଶଗଡ଼ରେ ହାତ ପୂରେଇବେ । [ପ୍ରସ୍ଥାନ]

କୁନାଳ—ମୁଁ ଗୋଟିଏ ବଡ଼ ଗୋପନ ଖବର ନେଇ ଆସିଚି ଜେମା ! ସେଥିପାଇଁ ଅନ୍ୟ କାହାରି ଏଠାରେ ଉପସ୍ଥିତ ହେବା ଠିକ୍ ନୁହେ । ତେବେ ଜେମାଙ୍କର ସଖୀ ନୀହାରିକା ଥିଲେ କ୍ଷତି ନାହିଁ । କିନ୍ତୁ ବଡ଼ ଗୋପନ—କୌଣସି ରୂପେ ଯେପରି ଏହା ପ୍ରକାଶ ନ ପାଏ ।

ସଂଘମିତ୍ରା—(ଚିନ୍ତିତା ହୋଇ) ଗୋପନ ଖବର ! ହଁ, ଆପଣଙ୍କୁ ମୁଁ ଆଉ କାହିଁ ଦେଖିଲି ପରି ମନେ ହେଉଚି, ଆପଣଙ୍କ କଣ୍ଠ ମଧ୍ୟ ମୋହର ପରିଚିତ ! ବୋଧହୁଏ ଏ ଜହ୍ନ ଆଲୁଅରେ ଭଲକରି ଚିହ୍ନି ପାରୁନାହିଁ ।

କୁନାଲ—(ପୂର୍ବ ପରି ମୃଦୁ ହସି) ରାସ୍ତା-ଘାଟରେ ବୁଲି ଭିକ୍ଷା କରିବା ତ ମୋହର ବେଉସା, ଦେଖି ନ ଥିବ କାହିଁକି ?

ନୀହାରିକା—ମୁଁ ମଧ୍ୟ ଆପଣଙ୍କୁ କେତେ ଥର ଦେଖିବା ପରି ମନେ ପଡ଼ୁଛି । କିନ୍ତୁ କେଉଁଠାରେ ଦେଖିଥିଲି ଭାବି ପାରୁନାହିଁ ।

କୁନାଲ—ହଁ, ଦେଖିଥିବ ନିଶ୍ଚୟ, ଅନେକ ଦିନ ତଳେ । କାରଣ କେତେଦିନ ହେଲା ମୁଁ ମଗଧକୁ ଆସିନାହିଁ । ସବୁଆଡ଼େ ବୁଲିବା ମୋର କାମ କି ନା ! ଦେଖିବାଟା ଅବଶ୍ୟ ମୋହର ପାଇଁ ମନା ହୋଇଛି, ସେଥିପାଇଁ ମତେ କେହି ଦେଖିବା କଥାଟା ସେପରି ଗୁରୁତର ବୋଲି ମୁଁ ଭାବେ ନାହିଁ ।

ନୀହାରିକା—ବର୍ତ୍ତମାନ କେଉଁଠାରୁ ଆସୁଛନ୍ତି ?

କୁନାଲ—ତକ୍ଷଶିଳାରୁ ।

ସଂଘମିତ୍ରା—(ଉଦ୍‌ବିଗ୍ନ ହୋଇ) ଭାଇ କୁନାଲଙ୍କର କିଛି ଖବର ଆଣିଛନ୍ତି ତା' ହେଲେ ?

କୁନାଲ—ହଁ ଜେମା, ତାଙ୍କଠାରୁ ମୁଁ ଆସୁଛି ।

ସଂଘମିତ୍ରା—(ଉତ୍ସାହ ଓ ଉଦ୍‌ବେଗରେ ) କହନ୍ତୁ ତେବେ, ସେ କେଉଁଠାରେ କିପରି ଅଛନ୍ତି ? ଅଳ୍ପଦିନ ହେଲା ତାଙ୍କଠାରୁ ଖଣ୍ଡିଏ ମାତ୍ର ପତ୍ର ପାଇଥିଲି । କିନ୍ତୁ ସେଥିରୁ ତାଙ୍କର ସବୁ ଖବର ମିଳିନାହିଁ । ସେଥିପାଇଁ ସମସ୍ତେ ବଡ଼ ଉଦ୍‌ବିଗ୍ନ ହୋଇ-ପଡ଼ିଛୁ ।

ନୀହାରିକା—ରାଜକୁମାର କାହିଁକି ହଠାତ୍ ତକ୍ଷଶିଳା ତ୍ୟାଗକଲେ ?

ସଂଘମିତ୍ରା—ଏବଂ ବୌଦ୍ଧଧର୍ମ ଗ୍ରହଣ କଲେ କାହିଁକି ?

କୁନାଲ—କାରଣ, ତାହା ମହାରାଜାଙ୍କର ଆଦେଶ ।

ସଂଘମିତ୍ରା—ମହାରାଜା !

ନୀହାରିକା—ଅସମ୍ଭବ କଥା ।

କୁନାଳ—ସତକଥା୍ଟାକ୍ତି ବେଶି ସମୟରେ ବିଶ୍ୱାସଯୋଗ୍ୟ ନୁହେଁ ।

ସଂଘମିତ୍ରା—(ବିସ୍ମୟ ଓ ଭୟରେ) କିନ୍ତୁ କୁନାଳଙ୍କ ବିଚ୍ଛେଦରେ ମହାରାଜ ଯେ କାତର ହୋଇପଡ଼ିଚନ୍ତି ! ଆଜକାଲି ସବୁବେଳେ କୁନାଳଙ୍କ କଥା—ଯାହାକୁ ଦେଖୁଚନ୍ତି ତାଙ୍କୁ କୁନାଳଙ୍କ ଖବର ପଚାରୁଚନ୍ତି ।

କୁନାଳ—ଶୁଣ ଜେମା, ତକ୍ଷଶିଳାରେ କୁଞ୍ଜରକର୍ଣ୍ଣ ସଙ୍ଗେ କୁନାଳ ଯେତେବେଳେ ଯୁଦ୍ଧରେ ବ୍ୟାପୃତ, ସେତେବେଳେ ସମ୍ରାଟଙ୍କ-ଠାରୁ ଗୋଟାଏ ଆଦେଶ ପାଇଲେ । ସେ ଆଦେଶରେ ଲେଖା ଥିଲା, ପତ୍ରପ୍ରାପ୍ତି ମାତ୍ରେ କୁନାଳ ନିଜର ଦୁଇଟି ଆଖି ଉପାଡ଼ି ବାହକ ହାତରେ ଦେବେ ଏବଂ ତାହାର କାରଣ ବୁଝିବାକୁ ଗଲେ ରାଜାଜ୍ଞା ଲଙ୍ଘନ କରିବେ । ସଙ୍ଗେ ସଙ୍ଗେ କୁନାଳ ରାଜା ଏବଂ ପିତାଙ୍କର ଆଦେଶ ପାଳନ କରିଅଛନ୍ତି ।

ସଂଘମିତ୍ରା—(ବ୍ୟାକୁଳ ଓ ଉତ୍ତେଜିତ ହୋଇ) ନା, ନା, ମିଛ କଥା ଆପଣ କହୁଚନ୍ତି । ମହାରାଜ କଦାପି ଏପରି ଆଦେଶ କରି ନାହାନ୍ତି । ତାଙ୍କର ପ୍ରିୟ ପୁତ୍ର କୁନାଳଙ୍କ ପ୍ରତି ଏପରି ନିଷ୍ଠୁର ଆଦେଶ କରିବା···

କୁନାଳ—କିନ୍ତୁ ପ୍ରଜାପୁଞ୍ଜ ଉପରେ ଏହାଠାରୁ ଅଧିକ ନିଷ୍ଠୁର ହୁକୁମ ହୋଇଅଛି । ସୁତରାଂ ଏପରି ଆଦେଶ ମହାରାଜାଙ୍କ କ୍ଷମତାର ବହିର୍ଭୂତ ନୁହେଁ ।

ମହାଶିକା—ରାଜକୁମାରଙ୍କ ପ୍ରତି ଏପରି ଆଦେଶ ଦେଇଥିଲେ ମହାରାଜ ବ୍ୟାକୁଳ ହୋଇ ତାଙ୍କୁ ସ୍ମରଣ କରୁ ନ ଥାନ୍ତେ ।

କୁନାଳ—(ମୃଦୁ ହସି) ସେ ଆଦେଶରେ ମହାରାଜାଙ୍କର ସ୍ୱାକ୍ଷର ଜାଲ କରାଯାଇଥିବା ଖବର କୁନାଳ ପରେ ଜାଣିପାରିଲେ । କିନ୍ତୁ ସେତେବେଳକୁ ସମୟ ଅତୀତ ହୋଇଯାଇଥିଲା ।

ନୀହାରିକା—ଜାଲ ସ୍ୱାକ୍ଷର ! କାହାର୍ ଏପରି ସାହସ !

କୁନାଲ—ହଁ, ସେ ଖବର ପାଇବା ଆଗରୁ କୁନାଲ ଅବଶ୍ୟ ଆଦେଶ ପାଳନ କରିସାରିଥିଲେ । ସେ ଆଦେଶ ମହାରାଜାଙ୍କର ନୁହେଁ, ବିମାତାଙ୍କର ।

ସଂଘମିତ୍ରା—ତିଷ୍ୟରକ୍ଷିତା !

ନୀହାରିକା—ଉଃ, ଧନ୍ୟ ନାରୀ !

କୁନାଲ—ଆଜ ସେହିଦିନରୁ ରାଜ୍ୟଲକ୍ଷ୍ମୀ କୁନାଳ ପଥେ ପଥେ ଅନ୍ୟ ଏକ ରାଜ୍ୟର ସନ୍ଧାନରେ···(ମୃଦୁ ହାସ୍ୟ)

ସଂଘମିତ୍ରା—(ଆସନ ଛାଡ଼ି ସହସା ଉଠିଗଲେ ଏବଂ କୁନାଲଙ୍କ ଆଗରେ ଜାନୁପାତ କରି ଓ ତାଙ୍କର ଦୁଇହାତ ଧରି ଗଦ୍ ଗଦ୍ ସ୍ୱରରେ ) ଭାଇ ! ଭାଇ କୁନାଳ !

ନୀହାରିକା—(ଆସନ ଛାଡ଼ି ଠିଆହୋଇ) ରାଜକୁମାର !

କୁନାଲ—(ପ୍ରବୋଧ ଦେଇ) ଏ କଣ ସଂଘମିତ୍ରା, ଏତେ ଅଧୀର ! ଏପରି କଠିନ ମୁଷ୍ଟି କାହିଁକି ? ଉଦ୍‌ବେଗ ? ହଁ, ତୁମର ହାତର କମ୍ପନରୁ ବୁଝିପାରୁଛି । ଏ ପୁଣି କଣ ? ମୋ ହାତରେ ଉଷ୍ଣ ଜଳ କାହିଁକି ? କାନ୍ଦୁଛ ? ଛି ଭଉଣି ! ସବୁ ବନ୍ଧନରୁ ମୁକ୍ତି ଦେବା ପାଇଁ, ଅନ୍ଧ ଜଗତକୁ ଚକ୍ଷୁ ଦେବାପାଇଁ ସେ ଯେ ଏ ପୃଥିବୀକୁ ଆସିଥିଲେ । (ସଂଘମିତ୍ରାଙ୍କ ମସ୍ତକରେ ହାତ ବୁଲାଇ ଏବଂ ଆଖି ପୋଛିଦେଇ ) ଯାଅ ମା’ ନିଜ ଆସନକୁ । (ଉଭୟ ସଂଘମିତ୍ରା ଓ ନୀହାରିକା ନିଜ ନିଜ ଆସନରେ ବସିଲେ । )

ନୀହାରିକା—କିନ୍ତୁ ଏ ଖବର୍ ତ ମହାରାଜାଙ୍କୁ ଦେବାକୁ ହେବ ।

କୁନାଲ—ବାଃ, ତାହାହେଲେ ତ ଖୁବ୍ ଗୋପନ ରଖିବ ତୁମେ !

ନୀହାରିକା—(ଲଜ୍ଜିତା ହୋଇ) କିନ୍ତୁ ମହାରାଜାଙ୍କ ସଙ୍ଗେ କୁମାରଙ୍କର କ’ଣ ସାକ୍ଷାତ୍ ହେବ ନାହିଁ ?

କୁନାଳ—ନା, ଯୁଦ୍ଧଲିପ୍ସୁ ରାଜା ସହିତ ବନବାସୀ ଫକୀର ଯେକୌଣସି ସମୟରେ ଦେଖା କରି ପାରେ ନାହିଁ । ଶୁଣିଲି, ସମ୍ରାଟ୍ ବର୍ତ୍ତମାନ କଳିଙ୍ଗ-ବିଜୟ ପାଇଁ ଯୁଦ୍ଧଯାତ୍ରା କରୁଛନ୍ତି । ମୁଁ ମଧ୍ୟ ସେହି ଦିଗରେ ଯାଉଛି, କିନ୍ତୁ ଦୁହିଁଙ୍କର ଉଦ୍ଦେଶ୍ୟରେ ପ୍ରଭେଦ ଅଛି ।

ନୀହାରିକା—ଆମେ ଦୁହେଁ ମଧ୍ୟ କଳିଙ୍ଗ ଯିବୁ ।

କୁନାଳ—ଭଲ କଥା । ତାହାହେଲେ ତୁମ ସାଥିରେ ମଝିରେ ମଝିରେ ଦେଖା ହେବ । କିନ୍ତୁ ସାବଧାନ ! ଏ ଖବର ଯେପରି ମହାରାଜାଙ୍କୁ ନ ପହଞ୍ଚେ, ସେଥିପାଇଁ ତୁମେ ଦୁହେଁ ସତର୍କ ରହିଥିବ । ସମୟ ବୁଝି ମୁଁ ନିଜେ ଯାଇ ସାକ୍ଷାତ୍ କରିବି । ତୁମ ଦୁହିଁଙ୍କୁ ଆଗରୁ ଜଣାଇ ରଖିବାର କାରଣ, ଯଦି ଅନ୍ୟ କୌଣସି ଦିଗରୁ ମହାରାଜାଙ୍କୁ ଏ ଖବର ପହଞ୍ଚେ ଏବଂ ତୁମେ ଦୁହେଁ ଆଗରୁ ତାହା ଜାଣିପାର, ତାହାହେଲେ ବରଂ ଏକ୍ଷଣି ଯେପରି ସେ ତାହା ନ ଶୁଣନ୍ତି, ସେଥିପ୍ରତି ସାବଧାନ ଥିବ ।

ସଂଘମିତ୍ରା—ତାହାହେଲେ ତୁମେ ଆମ ସାଥିରେ ଯାଉନାହଁ, ଭାଇ ?

କୁନାଳ—(ମୃଦୁ ହସି) ସଂଘମିତ୍ରା ! ଆମର ବିନା ବିଚାରରେ ଯାହା ଘଟିଯାଇଅଛି, ସେଥିରେ ଦୁଃଖ କରିବାର କଥା ନୁହେଁ । ତୁମମାନଙ୍କ ସାଥିରେ ତ ମୁଁ ଚାଲିଚି, କେବଳ ମୋହର ପଥ ଯାହା ଟିକେ ଅଲଗା ।

(ପ୍ରଥମେ କୁନାଳ ଓ ପରେ ଅନ୍ୟ ଦୁଇଜଣ ଆସନ ଛାଡ଼ି ଉଠିଲେ । ସଂଘମିତ୍ରା କୁନାଳଙ୍କ ହାତ ଧରି ଧୀରେ ଧୀରେ ଚାଲିଲେ ଏବଂ କୁନାଳଙ୍କର ଗୀତ ।)

ପଥ ପାଶେ ଆଜ ଆସନ ସଜାଇ
ଖୋଜଇ ଏକା ମୁଁ କ ଧନ ହଜାଇ,
ଅନ୍ଧ ଆଖିରେ ଅଶ୍ରୁ କରିଲ ବନ୍ଧନ,
ପ୍ରିୟ ହେ, ପ୍ରିୟ ହେ, ।

[ସମସ୍ତେ ଧୀରେ ଧୀରେ ଫାଟକ ଆଡ଼କୁ ଚାଲିଲେ ।]

[ଯବନିକା]

# ଚତୁର୍ଥ ଅଙ୍କ

[ ଶରତର ଗୋଧୂଳି । ଛୋଟ ଧଉଳି ପାହାଡ଼ର ଶିଖର ଭାଗରେ ସଂଘମିତ୍ରା ଓ ନୀହାରିକା ଦୂରକୁ ଚାହିଁ ରହିଛନ୍ତି । ପାହାଡ଼ର ତଳ ଦେଶରେ କ୍ଷୀଣସ୍ରୋତା ଦୟା ନଦୀ । ପଶ୍ଚିମ ଦିଗ୍‌ବଳୟର ଅସ୍ତରାଗରେ ଦୁଇ ସଖୀଙ୍କର ଚକ୍ଷୁ ରଞ୍ଜିତ, ରଣସାଜରେ ଦୁହେଁ ସଜ୍ଜିତ । ]

ନୀହାରିକା— ଦୂରକୁ ଚାହିଁ ହାତ ଦେଖାଇ ) ଏ କଣ ଜେମା··· ନିକଟରେ ତ ଖଣ୍ଡଗିରି, ଆଉ ତାହାରି ତଳେ ଛୋଟ ଛୋଟ ଧଳା ବଉଦ ପରି ଜମା ହୋଇଛି—?

ସଂଘମିତ୍ରା—ଖଣ୍ଡଗିରି ତ ଏହି ଧଉଳି ପରି ଛୋଟ ପାହାଡ଼, ତାହା ତଳରେ ମେଘ ଆସନ୍ତା କୁଆଡ଼ୁ, ନୀରୁ ? ସେଗୁଡ଼ିକ କଳିଙ୍ଗର ରାଜ ପ୍ରାସାଦ ହେବ ।

ନୀହାରିକା—ଆଉ ଏହି ବାଁ ପାଖେ ବରୁଣେଇ ପାହାଡ଼ ନା ? କିନ୍ତୁ ପଶ୍ଚିମରେ ଏହି ଯେ ଲମ୍ବା ପାହାଡ଼ ଧାଡ଼ିଟା ଉପରେ ସୁନାଚଟା ପରି ସୂର୍ଯ୍ୟ ନିଶ୍ଚଳ ରହିଛି—

ସଂଘମିତ୍ରା—(ଅନ୍ୟ ଦିଗକୁ ମନ ଦେଇ) ଦେଖ ନୀରୁ, କଳିଙ୍ଗ ରାଜାଙ୍କର ହାତିପଲ ଯେମିତି ଅସଂଖ୍ୟ ବରୁଣେଇ ପାହାଡ଼ର ପାଦେର ଏବଂ ତାହାରି ତଳେ ଛୋଟ ଛୋଟ ଗୁଳ୍ମପରି କଳିଙ୍ଗର ସୈନ୍ୟଶ୍ରେଣୀ ।

ନୀହାରିକା—ଓଃ ! ସେମାନଙ୍କ ଗ୍ରୁଳରେ ସଞ୍ଜ ଆଗରୁ ରଣଭୂଇଁରେ ଅନ୍ଧାର ବ୍ୟାପିଗଲଣି ।

ସଂଘମିତ୍ରା—(ଦେହ ଓ ଗ୍ରୀବା ବଙ୍କାଇ ନୃତ୍ୟଭଙ୍ଗୀରେ ) ଆଜ ଦେଖ, ଯୁଦ୍ଧ ପୁଣି ଖରଣ ହୋଇଉଠୁଚି । ମଗଧ ସୈନ୍ୟ ଆଗକୁ ଆଗକୁ ଚାଲିଚି, ଯେମିତି ଗୋଟାଏ ଚଳନ୍ତା ଅରଣ୍ୟ ଏବଂ ତାହାର ଆଡ଼କୁ କଳିଙ୍ଗ ହାତୀପଲର ସେହି ପ୍ରକାଣ୍ଡ ପାଚେରିଟା ମାଡ଼ି ମାଡ଼ି ଆସୁଚି ।

ନୀହାରିକା—(ସେହିପରି ନୃତ୍ୟ ଭଙ୍ଗୀରେ ) ସେହି ପାଚେରି ପଛରେ ଅସଂଖ୍ୟ ସୈନ୍ୟ ସାମନ୍ତ ଯେମିତି ଝଡ଼ର ସମୁଦ୍ର ଏବଂ ହାତିପଲଟା ତାହାରି ଭିତରୁ ବଡ଼ଟ ଲହରୀମାଳା ପରି ଫୁଲ ଫୁଲ ଆକାଶକୁ ଉଠୁଚି । ଦେଖନ୍ତୁ ଜେମା ! ମଗଧ ସେନା —ଦୟାନଦୀର ଆରପାଖରୁ ଭଙ୍ଗା ପରି ସେ ଯେମିତି ସେହି ସମୁଦ୍ରଗର୍ଭକୁ ଧାଇଁଚି ଏବଂ ତାହାର ଆଘାତରେ ହାତିପଲଟା ବେଶି ବେଶି ଉପରକୁ ଉଠୁଚି—ମଗଧ ସେନାକୁ ଦଳିଦେଇ ମାଟିରେ ମିଶାଇ ଦବ ଅବା !

ସଂଘମିତ୍ରା—(ଅନ୍ୟ ଦିଗରେ ଗ୍ରୀବା ବଙ୍କାଇ ) ଏ ପାଖରେ ଦେଖୁଚ, ଲହରୀ ଉପରେ ଫେଣ ପରି ଏହି ଯେ ମସ୍ତ ଧଳା ହାତୀଟା, କେଡ଼େ ବେଗରେ ଯୁଦ୍ଧ ମଝିକୁ ଧାଇଁ ଆସୁଚି ।

ନୀହାରିକା—(ସେହିପରି ଗ୍ରୀବା ଭଙ୍ଗୀରେ) ହଁ ଜେମା, ଉପରେ ତାହାର ସୁନା ଛତି ଏବଂ ସେହି ସୁନା ଛତି ତଳେ ଜଣେ ଆରୋହୀ—ମଥାରେ ମଣିମାଣିକ୍ୟର ମୁକୁଟ, ଦେହରେ ଜରିର ସାଞ୍ଜୁ । ସୂର୍ଯ୍ୟର ଶେଷ ଦୀପ୍ତିରେ ଛତିଟା ତରଳ ସୁନା ପରି ତଳ ତଳ ଦିଶୁଚି, ଆଉ ସେହି ଆରୋହୀର ମୁକୁଟରୁ ଇନ୍ଦ୍ର-ଧନୁର ସାତଟା ରଙ୍ଗ ଜଳି ଉଠୁଚି । ସେ ନିଶ୍ଚୟ କଳିଙ୍ଗର ରାଜପୁତ୍ର ହେବେ । ତୁମେ ଜେମା ? (ମୃଦୁ ହାସ୍ୟ)

ସଂଘମିତ୍ରା—କିଏ ? ଜୟପାଳ ? ହଁ, ଖୁବ୍ ସମ୍ଭବ । କାରଣ କଳିଙ୍ଗର ରାଜା ତ କାଲିଠାରୁ ନିହତ ହୋଇଛନ୍ତି ।

ମାହାରିକା— କୌତୁକ କରି ଏତେ ବାଟରୁ ଜେମା ତାଙ୍କୁ ଚିହ୍ନି ରଖିଲେଣି । କାହିଁ, ମୋ ଆଖିରେ ତ କିଛି ଜଣାପାଉ ନାହିଁ !

ସଂଘମିତ୍ରା—ତୁମର ସେ କଣ ଆଖି ନା ମୃଗୁନି ପଥର ? ଦୂରକୁ ଚାହିଁ ଦେଖ ମାରୁ, ସେହି ହାତି ପଲର ପାଚେରିଟା କେତେ ଭାଗରେ ବିଭକ୍ତ ହୋଇପଡ଼ିଛି ଏବଂ ଅତି ନୃଶଂସ ଭାବରେ ମଗଧ ସେନାକୁ ଦଳିଦେଉଛି ।

ମାହାରିକା—ନାହିଁ ଜେମା ! ବାଘ ଶିକାରକୁ ଛକିଲା ପରି ମଗଧ ସେନା ନଇଁ ନଇଁ ଚାଲୁଛି—ସେଥିପାଇଁ ସେପରି ଦେଖା-ଯାଉଛି । ଆଉ ଏ କଣ—ଯୁଦ୍ଧଭୂଇଁ ଉପରେ ଅଗଣିତ ଚଢ଼େଇ ?

ସଂଘମିତ୍ରା—ଚଢ଼େଇ ନୁହେଁ ମାରୁ, ଦୁଇ ପକ୍ଷର ଶର ବୃଷ୍ଟି । ଶରତ୍ ଗୋଧୂଳିର ନିର୍ମଳ ଆକାଶଟା ସେଥିରେ ଅନ୍ଧାର ହୋଇ ପଡ଼ିଛି । ଆଉ ତ କିଛି ଦେଖାଯାଉ ନାହିଁ !

ମାହାରିକା—(ନିବିଡ଼ ଦୃଷ୍ଟିରେ) ନା, କିନ୍ତୁ ସେହି ବିରାଟ ଧଳା ହାତୀଟା ମଗଧ ସେନା ଭିତରେ···କେହି ତାହାର ପାଖ ମାଡ଼ି ପାରୁ ନାହାନ୍ତି । ତେବେ ଚାରିଆଡ଼ୁ ତାକୁ ଜଗି ରହିଚନ୍ତି । ଉଃ ପାହୁଲଟାମାନ ଯେମିତି ଗୋଟାଏ ଗୋଟାଏ ପାହାଡ଼କୁ ମଧ ପାତାଳକୁ ଚାପିଦେବ ! ବେପରୁଆ ହୋଇ ଚାଲିଛି । ଚାରିଆଡ଼କୁ ଟିକିଏ ଭ୍ରୂକ୍ଷେପ ହେଲେ ଥାନ୍ତା ! ଶୁଣ୍ଢଟାକୁ ଖାଲି ଉପରକୁ ଟେକିଛି ଏବଂ ବାଦୁଡ଼ି ପରି ସେଥିରେ ମଗଧସେନାର ଶର ଗୁଡ଼ିକ ଲାଗିଛି ।

ସଂଘମିତ୍ର—(ମୃଦୁ ହସି) ହଉ ମାରୁ, ମୋର ତେବେ ଭୁଲ୍ ହୋଇଚ । ତୁମ ଆଖି ଦୁଇଟା ଭାରି ଭଲ । ଯାହା କେହି ଦେଖି ପାରିବେ ନାହିଁ, ତୁମ ଆଖି ତାହା ଦେଖେ ।

ମାହାରିକା—ଆଜ କେତେ ଦିନ ଜେମା ? ଦଶଦିନ ତ ହେଲଣି, ଖାଲି ହତ୍ୟା ହତ୍ୟା । ଆଜ ତିନ ହଜାର ହେଲେ କାଲି ପାଞ୍ଚ ହଜାର, ପରଦିନ ଦଶ ହଜାର । ପ୍ରତିଦିନ ଖାଲି ମଲାଲୋକଙ୍କର ସୁମାରି ଲଗିଛି, ଜୀଅନ୍ତାଙ୍କୁ କେହି ପଚାରୁ ନାହିଁ । ମନୁଷ୍ୟ ମରିବା ପାଇଁ କି ଏମିତି ପାଗଳ ହୁଏ ?

ସଂଘମିତ୍ର—ପାଗଳ ନ ହେଲେ ମରିବ କିପରି, ମାରୁ ? ସେ ପାଗଳାମିର କଣ ଅନ୍ତ ଅଛି ? ମରିବା ପରେ ମଧ୍ୟ ତାହା ଶେଷ ହୁଏ ନାହିଁ । ମଲା ଲୋକର ପ୍ରେତାତ୍ମା ଆସି ଜୀଅନ୍ତା ମଣିଷଙ୍କୁ ଗ୍ରାସ କରେ । କାହା ଭାଇ ମରିଚ, କାହାର ବନ୍ଧୁ ମରିଚ, ଆଉ କାହାର ନାତି—ସେମାନେ ଫେରି ଆସି ପୁଣି ନିଜର ଜ୍ଞାତି କୁଟୁମ୍ବଙ୍କୁ ଆକ୍ରମଣ କରନ୍ତି । ସେ ଆକ୍ରମଣରେ ଦୁଇ ଗୁଣ ପାଗଳ ହୋଇ ଜୀଅନ୍ତା ମଣିଷ ଏହି ଶବସମାଧି ଉପରେ ସମାରୋହ କରେ—ମରଣର ଦାନବ ଲୀଳା ଉପରେ ବିଜୟର ନିଶାଣ ଉଡ଼ାଏ । ରକ୍ତତୃଷାର ପିଶାଚ ନାଚ ନାଚ ମୃତ୍ୟୁକୁ ଉତ୍ସାହ ଦିଏ—ଭାଟ ଚାରଣ ତାହାର ଗୀତ ଗାଆନ୍ତି, ମରଣ ପାଇଁ ଯେତେ ଧନ ସମ୍ପତ୍ତି ବ୍ୟୟ ହୁଏ, ତାହାର ଦଶ ଭାଗରୁ ଭାଗେ ହେଲେ ଜୀବନ ପାଇଁ ଖର୍ଚ୍ଚ ହେଉଥାନ୍ତା !

ମାହାରିକା—ଦେଖନ୍ତୁ ଜେମା, ପାହାଡ଼ ଉପରେ ଠାଏ ଠାଏ ନିଆଁ ଜଳି ଉଠୁଛି । ଏବେ ମଧ୍ୟ କଣ ଯୁଦ୍ଧ ଲଗିଛି ?

ସଂଘମିତ୍ର—ହଁ, ଆଉ ସିନା କିଛି ଦେଖା ଯାଉନାହିଁ, ଶୁଣି ପାରୁ ନାହଁ, ସମୁଦ୍ର ଗର୍ଜନ ପରି ସୈନ୍ୟମାନଙ୍କର ଗୋଳମାଳ ?

ଏଥର ସ୍ଥଳ ଫେରିବା ମାତ୍ର—ଉପ୍ୟକାରର ପକ୍ଷୀଗୁଡ଼ିକ ଧଉଳିର ଗୁମ୍ଫା ଭିତରେ ଶୋଇଲେଣି, ଦୂର ପର୍ବତଗୁଡ଼ିକର୍ ଶିଖର-ରେଖା ଆକାଶରେ ମିଶି ଗଲଣି । ବିଶ୍ୱ ପ୍ରକୃତି ବିଶ୍ରାମ ନେଇଛି,କିନ୍ତୁ ଏ ଯୁଦ୍ଧର ଅବସାନ ନାହିଁ ।

ମାହାରିକା—ଗ୍ଭଲନ୍ତୁ ଜେମା, ଆଉ ତ କିଛି ଦେଖାଯାଉ ନାହିଁ, ପାହାଡ଼ ଉପରେ ପବନଟା ମଧ୍ୟ ଭାରି ଥଣ୍ଡା ହେଲଣି । (ଓହ୍ଲାଇବାର ଉପକ୍ରମ କରି ) ଧୀରେ ଜେମା, ଏଠାରେ ବହୁତଗୁଡ଼ାଏ ପଥର—କଳିଙ୍ଗସେନାଙ୍କ ମୁଣ୍ଡ ପାଇଁ ବୋଧହୁଏ ସାଇତା ହୋଇଛି । ( ଉଭୟଙ୍କର ପ୍ରସ୍ଥାନ )

(ପର୍ବତ ତଳରେ ଅଶୋକ ଓ ଗଣଭଟ୍ଟଙ୍କର ଧୀରେ ଧୀରେ ପଦଗ୍ଭରଣ । ଧଉଳି ପାହାଡ଼ର ଚୂଡ଼ା ଅନ୍ଧକାରରେ ମିଶି ଯାଇଛି ।)

ଅଶୋକ—ଆଜି ପୁଣି ସେହି ଗ୍ରାମକୁ ଯାଇଥିଲ ? କେମିତି ଲଗିଲା ?

ଗଣଭଟ୍ଟ—ଗ୍ରାମଗୁଡ଼ାକ ପ୍ରାୟ ଯେମିତି ଲଗେ । ପୁରୁଷ ଲୋକ ତ ନାହାନ୍ତି କହିଲେ ଚଳେ—ସମସ୍ତେ ଯାଇଛନ୍ତି ଯୁଦ୍ଧକୁ ।

ଅଶୋକ—ସମସ୍ତେ ଯୁଦ୍ଧକୁ ?

ଗଣଭଟ୍ଟ—ଯୁଦ୍ଧକୁ ଯିବେ ନାହିଁ ତ ଜୀଅନ୍ତା ହୋଇ ସେ କଣ କରିବେ ? ବାକି ଯେ ବୁଡ଼ା ବୁଡ଼ା, କେତେ ଜଣ ଅଛନ୍ତି ତାଙ୍କର ମଧ୍ୟ ମରିବା ଉଚିତ । ଆଉ ଯେ ଅଣ୍ଡାବଚ୍ଚା, ଝିଅ ମାଇପେ ହୋଇ ରହିଛନ୍ତି, ତାଙ୍କ କଥା ଛାଡ଼ନ୍ତୁ । ସେ ତ ମଣିଷ ନୁହନ୍ତି, ଗୋଟାଏ ଗୋଟାଏ ଜନ୍ତୁ । ଘର ଦୁଆର ଯେମିତି ଭଙ୍ଗା ଦଦରା, ମଣିଷଗୁଡ଼ାଙ୍କର ବି ସେମିତି ଗଣ୍ଡି ନାହିଁ କି ମୁଣ୍ଡ ନାହିଁ । ଏଡ଼େ ବୋକା ଯେ, ବିଦେଶୀ ବୋଲି ଜଣେ କେହି ମତେ ଠଉରେଇ ପାରିଲେନାହିଁ । ଜୀଅନ୍ତା ମଣିଷର କିଛି

ହେଲେ ଲକ୍ଷଣ ଥାନ୍ତା ! ଗୋଡ଼ ମାଟି ପର ଯୁଆଡ଼େ ଫିଙ୍ଗିଦେଲ ସିଆଡ଼େ ପଡ଼ିଲେ । ନିଜର ଇଚ୍ଛା ବୋଲି କିଛି ନାହିଁ । ସବୁ କଥାରେ ଖାଲି ଭାଗ୍ୟ—ବସିଲେ ଭାଗ୍ୟ, ଜାଗିଲେ ଭାଗ୍ୟ, ଯୁଦ୍ଧକଥା ପଚାରିଲେ ସେହି ଭାଗ୍ୟ ।

ଅଶୋକ—ମଗଧ ଗ୍ରାମମାନଙ୍କଠାରୁ କିଛି ପ୍ରଭେଦ ଦେଖିଲ ?

ଗଣଭଟ୍ଟ—କିଛି ନାହିଁ, ସବୁ ସମାନ । ଗ୍ରାମ ନୁହେଁ ତ ଶାଳଗ୍ରାମ ।

ଅଶୋକ—ବୌଦ୍ଧଶ୍ରମଣ ବେଶରେ ଯାଇଥିଲ ତ ?

ଗଣଭଟ୍ଟ—ହଁ ମହାରାଜ ! ଖାଲି ଏହିପରି ଯାଇଥିଲେ ମଧ୍ୟ ମୋହର କେଶାଗ୍ର କେହି ଛୁଇଁ ପାରି ନ ଥାନ୍ତେ । ତେବେ ଏତିକ ହେ, ଝିଅବୋହୂମାନେ ଏତେ ନିର୍ଭର ହୋଇ ପାଖକୁ ଆସନ୍ତେ ନାହିଁ । କଳିଙ୍ଗର ନଈ, ପାହାଡ଼ ଯେମିତି ସୁନ୍ଦର, ଝିଅଗୁଡ଼ିକ ସେମିତି ଗୋଟିଏ ଗୋଟିଏ ପ୍ରତିମା । ସେହିମାନଙ୍କ ପାଇଁ ମନଟା ଟିକିଏ ତରଳିଗଲା । ଇଚ୍ଛା ହେଲା, କଳିଙ୍ଗର ପୁରୁଷଯାକ ପଛେ ସମସ୍ତେ ମରନ୍ତୁ; କିନ୍ତୁ ଝିଅଗୁଡ଼ିକ ବିଧବା ନ ହୁଅନ୍ତୁ ।

ଅଶୋକ—ତୁମେ ତା'ହେଲେ କଳିଙ୍ଗଯୁଦ୍ଧକୁ ସମସ୍ତଙ୍କଠାରୁ ବେଶି ଉପଭୋଗ କଲ । (ମୃଦୁ ହାସ୍ୟ)

ଗଣଭଟ୍ଟ—ହଁ ମହାରାଜ ! କାରଣ ମତେ ଯୁଦ୍ଧଭୂମିକୁ ଯିବାପାଇଁ ପଡ଼ ନାହିଁ । ତୁମ୍ଭେ ଯେପରି କାଲିଠାରୁ ଯୁଦ୍ଧ ଜୟ ବିଷୟରେ ନିଶ୍ଚିନ୍ତ ରହି ଆଜି ଆଉ ଯିବାପାଇଁ ଆବଶ୍ୟକ ମନେକଲେ ନାହିଁ, ମଗଧରୁ ଅନୁକୂଳ କରିବା ମାତ୍ରକେ ଯୁଦ୍ଧ କରିବା ମୋ ପକ୍ଷରେ ଅନାବଶ୍ୟକ ବୋଲି ମୁଁ ସେହିପରି ସ୍ଥିର କରିଥିଲି ।

ଅଶୋକ—ନା, ଯୁଦ୍ଧ ଜୟ ବିଷୟରେ ନିଶ୍ଚିତ ରହି ଆଜି ମୁଁ ଯେ ଯାଇନାହିଁ ତାହା ନୁହେଁ । ଯୁଦ୍ଧଟାକୁ ଏତେ ଶୀଘ୍ର ଶେଷ କରିଦେବା ମୋର ଇଚ୍ଛା ନୁହେ । ଯୁଦ୍ଧ ସମୟରେ ହିଁ ମୋର

ମନଟା ଯେପରି ଭଲଥାଏ, ଦେହଟା ମଧ୍ୟ ସେହିପରି ।

ଗଣଭଦ୍ର—ମୋହର ମଧ୍ୟ ଦେହ ମନ ଭାରି ଭଲ ଅଛି । କଳିଙ୍ଗ ଜଳବାୟୁରେ ହଜମ ଶକ୍ତିଟା ଯେପରି ଚାରିଗୁଣ ବଢ଼ି ଯାଇଛି, କଳିଙ୍ଗର ଦୃଶ୍ୟ ଦେଖି ଦୃଷ୍ଟି ଶକ୍ତି ମଧ୍ୟ ଏପରି ବଢ଼ିଛି ଯେ, ଚାରିଟା ଦିନରେ ଚାଳିଶା ଛାଡ଼ିଯାଇଛି ।

ଅଶୋକ—ଦୃଷ୍ଟି ଶକ୍ତି ?

ଗଣଭଦ୍ର—ହଁ ମହାରାଜ, ବର୍ତ୍ତମାନ ବିଶ୍ୱରୂପ ଦର୍ଶନ କରିବାର ସାମର୍ଥ୍ୟ ମଧ୍ୟ ମୋହର ଜାତ ହୋଇଅଛି ।

( ଅଶୋକଙ୍କର ହାସ୍ୟ)

(ଜୟଧ୍ୱନି ଓ ମନ୍ତ୍ରୀ ରାଧାଗୁପ୍ତଙ୍କର ପ୍ରବେଶ )

ରାଧାଗୁପ୍ତ—(ଅଭିବାଦନ କରି ଉଦ୍‌ବେଗର ଉଚ୍ଛ୍ୱାସରେ) ମହାରାଜାଙ୍କର ଜୟ ହେଉ । କଳିଙ୍ଗ ଆଜି ସମ୍ପୂର୍ଣ୍ଣ ପରାସ୍ତ ହୋଇଛି ।

ଅଶୋକ—( ନିରୁତ୍ସାହ ସ୍ୱରରେ) ଯୁଦ୍ଧ ତେବେ ଆଜିଠାରୁ ଶେଷ ହେଲା ?

ଗଣଭଦ୍ର—ରାଧାଗୁପ୍ତ ! ଏତେ ଶୀଘ୍ର ଯୁଦ୍ଧ ଶେଷ କରିଦେବା ତୁମର ଉଚିତ ହେଲା କି ? ତୁମେ କଣ ଜାଣନାହିଁ, ଯୁଦ୍ଧ ସମୟରେ ମହାରାଜଙ୍କର ଚିତ୍ତ ସବୁଠାରୁ ବେଶି ପ୍ରଫୁଲ୍ଲ ଥାଏ—ଯୁଦ୍ଧବେଳେହିଁ ଭାରତ ସମ୍ରାଟ୍ ପୃଥିବୀର ଶ୍ରେଷ୍ଠ ବିବେକୀ—ଅସାଧାରଣ ସାମ୍ୟବାଦୀ—ଆଉ ଆମ୍ଭମାନଙ୍କୁ ସାଧାରଣ ଭାବରେ ଦୁଃଖ ସୁଖ କହିବାର ସୁଯୋଗ ମିଳେ ସେତିକବେଳେ—ସେତିକବେଳେ ହିଁ ଶ୍ରୀମୁଖଙ୍କ ମୁହଁରୁ ପଦେ ଦୁଇପଦ ଖୁସିକଥା ଶୁଣିବାକୁ ପାଇଥାଉଁ ?

ରାଧାଗୁପ୍ତ—( ମୃଦୁ ହସି) ମହାରାଜାଙ୍କ ଶ୍ରୀମୁଖରେ ତୁମର ଖୁସି ଗପ କରିବାର ସୁବିଧା ଶେଷ ହେଉନାହିଁ ଗଣଭଦ୍ର ! ଏହାପରେ

ଆନ୍ଧ୍ରର ଦକ୍ଷିଣକୁ ଆମର ଅଭିଯାନ ହେବ—ଚେର, କେରଳ ଓ ସିଂହଳ ବିରୁଦ୍ଧରେ ।

ଅଶୋକ—ଅବଶ୍ୟ । ଏହାପରେ ସିଂହଳ ବିଜୟ; କିନ୍ତୁ କଳିଙ୍ଗ-ଯୁଦ୍ଧ ଏଇଠାରେ ବନ୍ଦ ହେଲା ?

ରାଧାଗୁପ୍ତ—ହଁ ମହାରାଜ ! କଳିଙ୍ଗ ସମର ଏଇଠାରେ ହିଁ ବନ୍ଦ ଏବଂ କଳିଙ୍ଗ ରାଜପୁତ୍ର ଜୟପାଳ ବନ୍ଦୀ । କଳିଙ୍ଗ ଯୁଦ୍ଧ ମହାରାଜାଙ୍କ ରାଜତ୍ୱକାଳରେ ସର୍ବଶ୍ରେଷ୍ଠ ।

ଗଣଭଟ୍ଟ—କାରଣ ମରିଛନ୍ତି ସେପରି ଲକ୍ଷ ଲକ୍ଷ, ବନ୍ଦୀମାନଙ୍କ ସଂଖ୍ୟା ମଧ୍ୟ ଅଳ୍ପ ନୁହେଁ ।

ଅଶୋକ—ବାସ୍ତବିକ, ଏଥର ଯୁଦ୍ଧଟା ଭାରି ଭଲ ଲାଗିଲା ।

ଗଣଭଟ୍ଟ—କିନ୍ତୁ କଳିଙ୍ଗ ଯଦି ଜୟୀ ହୋଇଥାନ୍ତା, ତାହାହେଲେ କଦାପି ଏତେ ଭଲ ଲାଗିନଥାନ୍ତା !

ଅଶୋକ—କଳିଙ୍ଗ ସେନ ଯଦିବା ହାରିଚି, ଯୁଦ୍ଧ କରିଛି ବିଚକ୍ଷଣ । ମଗଧ ସୈନ୍ୟ ତାହା ପାଖରୁ ରଣକୌଶଳ ଶିଖିବାର କଥା । ତାହାର ପଦକ୍ଷେପ, ଶର ମାରିବାର ଭଙ୍ଗୀ, ବ୍ୟୂହ-ରଚନା ପ୍ରଭୃତି ଗୋଟାଏ ଗୋଟିଏ ଛବିରେ ଅଙ୍କା ହେବାର ବସ୍ତୁ ।

ଗଣଭଟ୍ଟ—ମଗଧ ସେନାର ମଧ୍ୟ ବାହାଦୁରୀ ଥିବ, ମହାରାଜ ! କିନ୍ତୁ ତାହା ଆଲୋଚନା କରିବାକୁ କଳିଙ୍ଗରେ ଏକ୍ଷଣି କାହାକୁ ଫୁରୁସତ୍ ମିଳିବ ନାହିଁ । ଆବଶ୍ୟ ଏ କଥା ମାନିବାକୁ ହେବ ଯେ, ମଗଧ ସେନା ଯୁଦ୍ଧଭୂଇଁକୁ ଛବି ଅଙ୍କେଇବାକୁ ଯାଏ ନାହିଁ, ମଣିଷ ମାରିବାକୁ ଯାଏ ।

ଅଶୋକ—( ରାଧାଗୁପ୍ତଙ୍କୁ ଚାହିଁ ) ସୈନ୍ୟ ସାମନ୍ତମାନେ ତେବେ ଯୁଦ୍ଧ ଭୂମିରୁ ଫେରିଛନ୍ତି ?

ରାଧାଗୁପ୍ତ—କେବଳ ଗୋଟାଏ ଦଳ ଏ ସମ୍ବାଦ ଦେବାପାଇଁ ଫେରିଆସିଛନ୍ତି । ଆଉ ସମସ୍ତେ ବିଜୟ ଉତ୍ସବରେ ଉନ୍ମତ୍ତ ଏବଂ କଳିଙ୍ଗ ରାଜପ୍ରାସାଦ ଦଖଲ କରିବାରେ ଅନ୍ୟମାନେ ବ୍ୟସ୍ତ ।

ଗଣଭଦ୍ର—ବାକି ସବୁ ହୁଏତ ଅତି ଆହ୍ଲାଦରେ ଯୁଦ୍ଧ ଭୂଇଁରେ ଶୋଇଯାଇଛନ୍ତି, ଆଉ ଥରେ ନ ଉଠିବା ପାଇଁ । ଆଉ କିଏ ହୁଏତ ହାତ ଗୋଡ଼ ଛିଣ୍ଡାଇ ମଣିଷ ନ ପାଇ ବିଲୁଆ କୁକୁରଙ୍କ ସାଥିରେ ଯୁଦ୍ଧ କରୁଚି, ଅନ୍ତତଃ ଘଡ଼ିଏ ଖଣ୍ଡେ ବଞ୍ଚି ଯିବା ଲାଗି—ନୁହେଁ ରାଧାଗୁପ୍ତ ?

ରାଧାଗୁପ୍ତ—ସେହିମାନଙ୍କ ସମାଧି ଉପରେ ମଗଧର ବିଜୟବାନ ଉଡ଼ିବ, ଗଣଭଦ୍ର ! ଏ ବିଜୟ ସେହିମାନଙ୍କର ।

ଗଣଭଦ୍ର—ତାହାହେଲେ ଯେଉଁମାନେ ଜୀବିତ ଅଛନ୍ତି, ସେମାନଙ୍କର ମଝି ଏଠାରେ କହିତ ହେବା ଉଚିତ; କିନ୍ତୁ ବିଜୟଟା ମୃତ କିମ୍ବା ଆହତ ଲୋକଙ୍କର କେମିତି ହେବ ? ଯେ ମରି ଶୋଇଚି ସେ ତୁମ ଜୟଧ୍ୱନି ଶୁଣି ପାରିବନାହିଁ । ଯାହାର ହାତ ଛିଡ଼ିଚି, ଗୋଡ଼ ଭାଙ୍ଗିଚି କିମ୍ବା ଆଖି ଫୁଟିଚି, ସେ ଅବଶ୍ୟ ଜୟଧ୍ୱନିଟା ଶୁଣିବ କିନ୍ତୁ ବିଜୟଟାକୁ କେଉଁ ପରିମାଣରେ ଉପଭୋଗ କରିବ, ତାହା ସେହି ଜାଣେ । ମାତ୍ର ଯେଉଁମାନେ ସମ୍ପୂର୍ଣ୍ଣ ଅକ୍ଷତ ଦେହରେ ଫେରିଯିବେ, ଭୋଗ କରିବେ ସେହିମାନେ, ନୁହେଁ କି, ଯଥା—ତୁମେ ଓ ମୁଁ । ଅବଶ୍ୟ ଖାଲି କଳିଙ୍ଗ ବିଷୟରେ ତୁମ କଥା ଲାଗିପାରେ । ସେମାନଙ୍କ ଭିତରୁ ଯେ ମରିଛନ୍ତି, ସେ ଉଦ୍ଧାର ପାଇଲେ । କିନ୍ତୁ ଯେଉଁମାନେ ବଞ୍ଚି-ରହିଲେ, ସେହିମାନେ ନିର୍ଲ୍ଲଜ ।

ଅଶୋକ—ରାଧାଗୁପ୍ତ ! କାଲି ତେବେ ଫେରି ଯିବାର ଆୟୋଜନ

କର । ସୈନ୍ୟମାମନ୍ତମାନଙ୍କୁ ସମ୍ବାଦ ଦିଅ, ଏହିଠାରୁ ହିଁ ସିଂହଳ ବିଜୟ ପାଇଁ ଅଭିଯାନ କରାଯିବ । ମଗଧବାହିନୀର ବିଜୟନିଶାଣ ଧଉଳି, ଖଣ୍ଡଗିରି, ଦନ୍ତପୁର ପ୍ରଭୃତି କଳିଙ୍ଗର ବିଶିଷ୍ଟ ସ୍ଥାନମାନଙ୍କରେ ଉଡ଼ାଇ ଦିଅ । ଯାଅ, ତୁରନ୍ତ ଏ ସବୁ ସମାଧାନ କରି ଆସ ।

ରାଧାଗୁପ୍ତ—ସମସ୍ତ ଆୟୋଜନ କରାଯାଉଛି, ମହାରାଜ ! ସିଂହଳ ଅଭିଯାନ ପାଇଁ ଧନ ଜନର ଅଭାବ ନାହିଁ । କଳିଙ୍ଗକୁ ହିଁ ସେ ସମସ୍ତ ଯୋଗାଇବାକୁ ହେବ । ଏ ପର୍ଯ୍ୟନ୍ତ କଳିଙ୍ଗରୁ ଯେତେ ଧନ ଆଦାୟ ହୋଇଛି, ତାହା ତିନୋଟି ସିଂହଳ ଅଭିଯାନର ଖର୍ଚ୍ଚ ତୁଲାଇ ଦେଇ ପାରେ; କିନ୍ତୁ ଏହି ଘୋର ସମର ପରେ ମହାରାଜ ଟିକିଏ ବିଶ୍ରାମ ନେବେ ନାହିଁ, ସଙ୍ଗେ ସଙ୍ଗେ ପୁଣି···

ଅଶୋକ—ବିଶ୍ରାମ ? ସିଂହଳ ଅଭିଯାନ ରାସ୍ତାରେ ଚେର, କେରଳ ଓ ପାଣ୍ଡ୍ୟ ପ୍ରଭୃତି ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟ କେତେ ଖଣ୍ଡି କରଗତ କରିବାବେଳେ ବିଶ୍ରାମ ନେବା । ତା'ପରେ ଯବନ ରାଜା ଏଣ୍ଟିଓକାସ୍‌ଙ୍କୁ ପରାସ୍ତ କରି ଚୀନ ଅଭିମୁଖରେ ଯାତ୍ରା କରିବା । ପଥରେ ବିଶ୍ରାମ ପାଇଁ ବହୁତ ସମୟ ମିଳିବ ।

ରାଧାଗୁପ୍ତ—ତାହାହେଲେ କଳିଙ୍ଗର ବନ୍ଦୀ ସୈନ୍ୟମାନଙ୍କୁ ମଗଧ-ସେନାର ଅନ୍ତର୍ଭୁକ୍ତ କରିବା ଦରକାର । ସେମାନଙ୍କ ଭିତରୁ ଅନେକ ଆମର ବଶ୍ୟତା ସ୍ୱୀକାର କରିଅଛନ୍ତି; କିନ୍ତୁ କଳିଙ୍ଗର ରାଜକୁମାର ଭାରତ ସମ୍ରାଟ୍‌ଙ୍କର ଅଧୀନତା ସ୍ୱୀକାର କରିବାକୁ ରାଜି ନୁହନ୍ତି । ସମ୍ରାଟଙ୍କ ଉଦ୍ଦେଶ୍ୟରେ ପ୍ରଣତି ଜଣାଇବାକୁ କହିବାରୁ ଉଗ୍ର ଭାଷାରେ ସେ ଉତ୍ତର କଲେ ଯେ, କଳିଙ୍ଗ ରାଜକୁମାରର ଶିର ଅନ୍ୟ କୌଣସି ସିଂହାସନ ନିକଟରେ ନତ ହେବାକୁ ଶିଖିନାହିଁ । (ବ୍ୟଙ୍ଗହାସ୍ୟ) ଆଉ କେମିତି ତାଙ୍କର ଶିର

ନତ ହେବ କେଜାଣି ! ଯୁବକ କ ନା, ଔଦ୍ଧତ୍ୟଟା ଗୁଡ଼ ପାରୁ ନାହାନ୍ତି ।

ଅଶୋକ—ତେବେ ତାଙ୍କ ଶିରଚ୍ଛେଦ କରି ମଗଧର ସିଂହାସନ ତଳେ ଗଡ଼ାଇ ଦିଅ ।

ଗଣଭଟ୍ଟ—(ବିସ୍ମିତ ହୋଇ) କଏ, ଜୟପାଳ ! ସେଥର ଯେ ମଗଧ ଯାଇଥିଲେ ? ତାଙ୍କର ଶିରଚ୍ଛେଦ ଆଦେଶ ହେଉଛି ? କିନ୍ତୁ—

ରାଧାଗୁପ୍ତ—(ବାଧାଦେଇ) ହଁ, ସେହି ଜୟପାଳ । (ଅଶୋକଙ୍କ ପ୍ରତି ) ଆଜି ରାତି ଭିତରେ ତେବେ ପ୍ରଭୁଙ୍କର ଆଦେଶମତେ ସବୁ ପ୍ରସ୍ତୁତ କରିବା ଦରକାର ।

ଅଶୋକ—ହଁ , ଯାଅ, ତୁରନ୍ତ ସବୁ ଆୟୋଜନ କର ।

(ରାଧାଗୁପ୍ତଙ୍କ ପ୍ରସ୍ଥାନ)

ଗଣଭଟ୍ଟ—ମହାରାଜ ! ସଙ୍ଗେ ସଙ୍ଗେ ଆଉ ଗୋଟାଏ ଅଭିଯାନ ।

ଅଶୋକ—(ମୃଦୁ ହାସ୍ୟ) ହଁ, କାରଣ କଳିଙ୍ଗ ବିଜୟଟା ସଙ୍ଗେ ସଙ୍ଗେ ହଜମ ହୋଇପଡ଼ିଚି ।

ଗଣଭଟ୍ଟ—(ଅନୁନୟ ସ୍ୱରରେ) କିନ୍ତୁ ଏଠାରେ ଆଉ ଗୋଟିଏ ଖଣ୍ଡେ ଦିନ—

ଅଶୋକ—କାହିଁକି ? ତୁମର ଗ୍ରାମପର୍ଯ୍ୟଟନ କଣ ଶେଷ ହୋଇ ନାହିଁ ?

ଗଣଭଟ୍ଟ—କଳିଙ୍ଗଟା ଯେପରି ସ୍ୱାସ୍ଥ୍ୟକର ସେହିପରି ସୁନ୍ଦର । ଏହାର ଶରତ ଆକାଶଟା ମଗଧ ଲଲନାଙ୍କ ଚୋଳା ଅପେକ୍ଷା ଅଧିକ ନୀଳ । ଧଉଳିର ପାଦଦେଶରେ ଏହି କ୍ଷୁଦ୍ର ହ୍ରଦଟିରେ ଯେଉଁ ରକ୍ତପଦ୍ମ ଫୁଟିଚି, ତାହା ପାଣି ଉପରେ କି ଭିତରେ ବୁଝିବା କଠିନ; ଆଉ ସେହି ପଦ୍ମ ଗନ୍ଧରେ ପବନଟା ମଦାଳସା

ହୋଇଉଠିଛି । ସୁତରାଂ ପରିଶ୍ରମ କରି ଏତେ ଦୂର ଯେତେ-ବେଳେ ଆସିଛୁ, ଇଚ୍ଛାହେଉଛି ଆଜି ଦିନେ ଅଧେ ଏଠାରେ ରହି ଭଲକରି ଟିକିଏ ଦେଖିଯାନ୍ତୁ । ଏତେ ବଡ଼ ଯୁଦ୍ଧଟା ପରେ ଟିକିଏ ଶ୍ରାନ୍ତି ଅପନୋଦନ କରି—

ଅଶୋକ—ବାଃ, କବି ନ ହେଲେହେଁ ତମର ତ ଦେଖୁଚି କଳିଙ୍ଗକୁ ଆସି କାବ୍ୟପ୍ରୀତି ଜାତ ହୋଇଛୁ । କଳିଙ୍ଗ ପାଣି ପବନରେ ଭଲ ହଜମ ହୁଏ ବୋଲି ଶୁଣିଥିଲି, କିନ୍ତୁ ତୁମ ପରି ଅକବିର କବି ହେବାର ଉପସର୍ଗ ଯେ ଏଠାରେ ବାହାରିପାରେ, ତାହା ଏହିକ୍ଷଣି ଜାଣିପାରିଲି ।

ଗଣଭଟ୍ଟ—ଯେ କୌଣସି ଜାଗାରେ କବି ହେବାର ସୁବିଧା ଅଛି ମହିମା ! ସତ କଥା ଗୁଡ଼ି ଆଉ ଯାହା କିଛି କହିପାରିଲେ ଏବଂ ନିଜ ସହଧର୍ମିଣୀଙ୍କୁ ଛାଡ଼ି ଆଉ ଯେ କାହାକୁ ପ୍ରୀତି କରିପାରିଲେ ହିଁ କବିତ୍ୱ ଉଦ୍ଭବ ହେଲା । ତେଣିକି ଖାଲି କାଳି କଲମ ଖରଚ କରିବା ପାଇଁ ହାତରେ ପଇସା ଥିବା ଦରକାର । ତେବେ ବିପଦ ଏତିକି ଯେ, ସେଥିରେ ଗୃହିଣୀ ହେବେ ରୁଷ୍ଟ ଓ ସନ୍ତାନ ହେବେ ଦୁଷ୍ଟ । ଗୃହିଣୀ ଭାବିବେ କାବ୍ୟ ତାଙ୍କର ସଉତୁଣୀ, ଆଉ ସନ୍ତାନ ବିଚାରିବେ କାବ୍ୟଲକ୍ଷ୍ମୀଙ୍କୁ ନିଜର କାର୍ଯ୍ୟ-କଳାପରେ ଫୁଟାଇ ପାରିଲେ ହିଁ ସେ ହେବେ ପିତୃଭକ୍ତ । ମୋହର ଅବଶ୍ୟ ଗୃହିଣୀ କିମ୍ବା ସନ୍ତାନ ନାହାନ୍ତି, ସୁତରାଂ କବି ହେବାର ସମ୍ଭାବନା ଅଳ୍ପ ।

ଅଶୋକ—(ମୃଦୁ ହସି) ତୁମେ କିନ୍ତୁ ସବୁ କବିଙ୍କ ପରି ଅଶ୍ଳୀଳ ।

ଗଣଭଟ୍ଟ—ମହାରାଜ ! ତାହାର କାରଣ, ସବୁ କବିଙ୍କ ପରି ମୁଁ ଦରିଦ୍ର ଓ ଅସହାୟ । ଅନ୍ୟମାନେ ଯେଉଁଠାରେ କାମ କରନ୍ତି ସେଠାରେ ମୁଁ ଖାଲି କଥା କହେ ଏବଂ ଧର୍ମପତ୍ନୀଙ୍କଠାରୁ ଅକାମୀ

ବୋଲି ଯେଉଁ ସବୁ କଥା କହେ, ସେ ଖାଲି ମୋହର ନିଜର କଥା । ଶ୍ଳୀଳତାର ଛଦ୍ମବେଶରେ ଆଜି ସମସ୍ତଙ୍କୁ ଅନୁକରଣ କରି ନିଜକୁ ମୁଁ ଲୁଚାଏ ନାହିଁ । ନିଜର ଅନୁଭବକୁ ସଫା ସଫା ବ୍ୟକ୍ତ କରେ, କାରଣ ମୁଁ ମନୁଷ୍ୟ ଓ ମନୁଷ୍ୟର ଅନ୍ୟ ନାମ ବ୍ୟକ୍ତି ।

ଅଶୋକ—(ପ୍ରୀତ ହୋଇ) ହଉ, ହଉ, କାଲି କିନ୍ତୁ ତୁମର ସକାଳୁ ବୁଲିଟା ହୋଇ ପାରିବ ନାହିଁ । ଖୁବ୍ ଭୋରରୁ ସିଂହଳ ଯିବାକୁ ହେବ, ବୁଝିଲ ?

ଗଣଭଟ୍ଟ—(ହସି ଦେଇ) ଯେତେ କହିଲୁ କଲେ ମଧ୍ୟ ମଗଧ ସମ୍ରାଟ୍‌ଙ୍କୁ ତାଙ୍କ ସଙ୍କଳ୍ପରୁ ଟଳେଇଦେଲେ ଘୁଞ୍ଚାଇବାର ଉପାୟ ନାହିଁ । ମୁଁ ତେବେ ଯାଇ ଏ ଖବରଟା ସଂଘମିତ୍ରାଙ୍କୁ ଦିଏଁ । (ହଠାତ୍ ସ୍ମରଣ କରି) ହେଉ ମହାରାଜ ! ଏଠାରେ ପଛେ ଦିନଟାଏ ରହିବାର ନ ହେଲା—କିନ୍ତୁ ଆଜି ଗୋଟାଏ ମୋର ପ୍ରାର୍ଥନା ଅଛି, ଅଭୟ ମିଳିଲେ କହିବି ।

ଅଶୋକ—-ଆଜି କଣ ?

ଗଣଭଟ୍ଟ—କଳିଙ୍ଗର ଜୟପାଳଙ୍କ ସାଥିରେ ଆମ ଜେମାଙ୍କର ପୂର୍ବରୁ ଟିକିଏ ବନ୍ଧୁତା ଅଛି—ସେ ଯେତେବେଳେ ମଗଧ ଯାଇଥିଲେ ।

ଅଶୋକ—(ରୁକ୍ଷ ସ୍ୱରରେ) ବେଶ୍ କଥା ! ଜୟପାଳଙ୍କର ମରିବାରେ ତେବେ ସେ ବନ୍ଧୁତା ଭାଙ୍ଗିଯିବାର ଆଉ ତ ଭୟ ନାହିଁ ?

ଗଣଭଟ୍ଟ—କିନ୍ତୁ ସଂଘମିତ୍ରାଙ୍କ ପ୍ରାଣରେ ଆଘାତ ଲାଗିପାରେ । ଜୟପାଳଙ୍କୁ ବଧ କରିବା ବ୍ୟତୀତ ଆଉ କଣ କିଛି ଦଣ୍ଡ ଦିଆ-ଯାଇପାରେ ନାହିଁ ?

ଅଶୋକ—ତୁମେ ତେବେ ସେପରି ଗୋଟାଏ ଦଣ୍ଡର ଆବିଷ୍କାର କର, ଯାହାଦ୍ୱାରା ଜୟପାଳଙ୍କୁ ବଧ ନ କରି ମଧ୍ୟ ସେ ମରିବେ ।

ଦ୍ୱାରପାଳ—(ପ୍ରବେଶ ଓ ଜାନୁପାତ କରି) ମହାରାଜ ! ଶିବିର ପାଖରେ ଜଣେ ଅନ୍ଧ ଭିକ୍ଷୁ ଶ୍ରୀମୁଖଙ୍କର ଅପେକ୍ଷା କରିଛନ୍ତି ।

ଅଶୋକ—ଯୁଦ୍ଧଶିବିରରେ ଅନ୍ଧଭିକ୍ଷୁ ?

ଦ୍ୱାରପାଳ—(ଠିଆହୋଇ) ହଁ ମହାରାଜ ! ଏକାନ୍ତରେ ସେ ସାକ୍ଷାତ୍ କରିବାକୁ ଚାହାନ୍ତି ।

ଗଣଭଟ୍ଟ—କେଉଁ ଜାଗାର ଲୋକ ?

ଦ୍ୱାରପାଳ—ତାହା ଜାଣିବାର ଉପାୟ ନାହିଁ । ବେଶଭୂଷାରୁ କେବଳ ବୌଦ୍ଧ ଶ୍ରମଣ ବୋଲି ମନେହୁଏ ।

ଗଣଭଟ୍ଟ—ତେବେ ସମ୍ଭବତଃ କଳିଙ୍ଗର ଲୋକ । ବୌଦ୍ଧ ଭିକ୍ଷୁଙ୍କର ସଂଖ୍ୟା କଳିଙ୍ଗ ଛଡ଼ା ଆଉ ଏତେ ବେଶି କେଉଁଠାରେ ? ପୁଣି ବର୍ଷାଦିନର ସାଧବ ବୋହୂ ପରି କଳିଙ୍ଗ ଯୁଦ୍ଧଟା ତ ଆହୁରି ବେଶି ଲୋକଙ୍କୁ ଗେରୁଆ ଲୁଗା ପିନ୍ଧାଇବାର କଥା !

ଅଶୋକ—ଆସ ଗଣଭଟ୍ଟ ! ତୁମର ମଧ୍ୟ ସନ୍ନ୍ୟାସୀଙ୍କ ସଙ୍ଗେ ଆଳାପ ହେବା ଦରକାର । (ସମସ୍ତଙ୍କର ପ୍ରସ୍ଥାନ)

(ସଂଘମିତ୍ରା ଓ ଜୟପାଳଙ୍କର ପ୍ରବେଶ । ସଂଘମିତ୍ରାଙ୍କର ରୂପର ରୁଚିରତା ତାଙ୍କର ଚମ୍ପକରଙ୍ଗର ରେଶମୀ ଶାଢ଼ିକୁ ତୁଚ୍ଛ କରିଦେଉଛି । କୃଷ୍ଣବେଣୀର ପ୍ରାନ୍ତ କୁସୁମଟି କଟିଦେଶକୁ ଅଧିକ ଭଙ୍ଗିମ କରିଅଛି । ଭ୍ରୂଲତାବେଷ୍ଟିତ ଆୟତ ଆଖି ଦୁଇଟିକୁ ଚାହିଁଲେ କୈଳାସ ଶିଖରରେ ତପସ୍ୟାରତ ଗୌରୀଙ୍କର ଧ୍ୟାନମୂର୍ତ୍ତିଟି କଳ୍ପନା କରାଯାଇପାରେ ।

ଦର୍ଶକ ମଣ୍ଡଳୀର ଦୃଷ୍ଟିରେ ସେ ଏକ ସ୍ୱପ୍ନପୁରର ସୁରନର୍ତ୍ତକୀ । କିନ୍ତୁ ଜୟପାଳଙ୍କ ଦୃଷ୍ଟିରେ ଗୋଟିଏ ବିୟୋଗାନ୍ତକ

ମୂର୍ଚ୍ଛନା । ସଂଘମିତ୍ରାଙ୍କୁ ସେ ଯେତିକ ଦେଖୁଛନ୍ତି, ଭୁଲୁଚନ୍ତି ସେତିକ । କେହି ଲୋକ ମରିବାର ପୂର୍ବ ମୁହୂର୍ତ୍ତରେ ଯେଉଁ ତାଙ୍କୁ ଜୀବନ ଛଡ଼ା ଆଉ ଯାହା କିଛି ମାଗିବାକୁ କୁହାଯାଏ, ସଂଘମିତ୍ରାଙ୍କର ପ୍ରଣୟ ପ୍ରାର୍ଥନାରେ ତାଙ୍କର ଭାଷା ସେହିପରି ସ୍ପୃହାଶୂନ୍ୟ । ସୁତରାଂ ବୟସରେ ସେ ପଚିଶ ପାର ନ ହେଲେହେଁ ଏବଂ ଶୌର୍ଯ୍ୟ ଓ ରୂପ ଗୁଣରେ ସଂଘମିତ୍ରାଙ୍କର ସୁଯୋଗ୍ୟ ସମକକ୍ଷ ହେଲେ ମଧ୍ୟ, ନିକଟରେ ଜଣେ ରୂପସୀ ଯୁବତୀକୁ ଦେଖିବାର ଗୃଞ୍ଚଳା ତାଙ୍କଠାରେ ନାହିଁ । ଆସନ୍ନ ମୃତ୍ୟୁକୁ ସେ ଏତେଦୂର ନିଶ୍ଚୟ କରି ଧରିନେଇଛନ୍ତି ଯେ, ସେ ତାହାକୁ ଜୀବନ ଅପେକ୍ଷା ଅଳ୍ପ ଭୟ କରନ୍ତି । ସେଥିପାଇଁ ଶର ମାରିବାରେ ଯେପରି, ମରଣ ଉପରେ ମଧ୍ୟ ସେହିପରି ତାଙ୍କର ଲକ୍ଷ୍ୟ ସ୍ଥିର ଅଛି । )

ଜୟପାଳ—ଶରକୂଟ ? ହଁ ଜେମା, ଶରକୂଟ ବୁଲିବା କଥା ମନେ ଅଛି । ସେଦିନ ଅବଶ୍ୟ ତୁମ ସାଥିରେ କଥା କହିଥିଲି, ଶିକାର କରିଥିଲି; କିନ୍ତୁ ସେ କେବଳ ସ୍ୱାଧୀନ କଳିଙ୍ଗର ରାଜପୁତ୍ର ହିସାବରେ—ମଗଧର ଅନୁଗୃହୀତ ବନ୍ଦୀ ରୂପରେ ନୁହେଁ—ତୁମ କୃପାର ଦାସ ରୂପରେ ନୁହେଁ । (ମୃଦୁହାସ୍ୟ)

ସଂଘମିତ୍ରା—ତୁମକୁ ମୁଁ ଅନୁଗ୍ରହ କରୁ ନାହିଁ ରାଜପୁତ୍ର ! ତୁମଠୁ ଅନୁଗ୍ରହ ଭିକ୍ଷା କରୁଚି । ନିଜର ସ୍ୱାର୍ଥ ଦୃଷ୍ଟିରେ ତୁମକୁ ମୁଁ ଦେଖୁଚି, ଆପଣାର ସ୍ୱାର୍ଥ ପାଇଁ ତୁମର ମୁକ୍ତି ଲୋଡ଼ୁଚି ।

ଜୟପାଳ—(ମୃଦୁ ହସି) ହାୟ ସଂଘମିତ୍ରା ! ତୁମ ସ୍ୱାର୍ଥ ପ୍ରଣୟରେ; କିନ୍ତୁ ମୋ ସ୍ୱାର୍ଥ ? ମୋ ସ୍ୱାର୍ଥ ଯେ ମରଣରେ ! ମରିବା ବ୍ୟତୀତ ମୋହର ଯେ ବର୍ତ୍ତମାନ ଅନ୍ୟ ଗତି ନାହିଁ । ନିଜ ସ୍ୱାର୍ଥ ପାଇଁ ତୁମେ ଯେପରି ପିତୃ ଆଦେଶ ଉପରେ ହସ୍ତକ୍ଷେପ କରିଚ, ମୋହ ସ୍ୱାର୍ଥ ପାଇଁ ସେହିପରି ତୁମକୁ ମଧ୍ୟ ମୁଁ ଭୁଲିଚି । କଳିଙ୍ଗର

ଲକ୍ଷ ଲକ୍ଷ ମାତା ଓ କନ୍ୟାଙ୍କର ରୋଦନରେ ଏ କାନ ବଧିର ହୋଇସାରିଛି, ତୁମର ପ୍ରୀତିଗୁଞ୍ଜନ ପାଇଁ ତାହା ଅଯୋଗ୍ୟ । କଳିଙ୍ଗ ପ୍ରଜାର ରକ୍ତପାତରେ ଏ ଆଖି ଦୁଇଟା ଅନ୍ଧ, ତୁମର ରୂପ ଦେଖିବାର ସାମର୍ଥ୍ୟ ତାହାର ନାହିଁ ।

ସଂଘମିତ୍ରା—ତୁମ ମୁହଁରୁ ମୋ ରୂପର ବନ୍ଦନା ଶୁଣି ମୁଗ୍‌ଧ ହେବାକୁ ଲୋଡ଼ୁନାହିଁ, ଜୟପାଳ ! ମୁଁ ଚାହେଁ ତୁମର ମୁକ୍ତି, ତୁମର ଜୀବନ ।

ଜୟପାଳ—ମୁକ୍ତି ? ମଗଧ ସମ୍ରାଟ୍ ଆଦେଶ କରିଛନ୍ତି ହତ୍ୟା; କିନ୍ତୁ ତାଙ୍କର କନ୍ୟା ଚାହାନ୍ତି ମୁକ୍ତି ? କାରଣ ମୋ ମୁକ୍ତିରେ ତାଙ୍କର ସ୍ୱାର୍ଥ ସିଦ୍ଧି ହେବ । ଠିକ୍ ହେଲ ନାହିଁ ସଂଘମିତ୍ରା ସମ୍ରାଟ୍‌ଙ୍କ ଆଦେଶ ଉପରେ ତୁମର ଏପରି ଅନଧିକାର ହସ୍ତକ୍ଷେପ । ସେ ତୁମର ପିତା, ତୁମର ଅଭିଭାବକ ଓ ରାଜା । କିନ୍ତୁ ସନ୍ତାନ ବୋଲି ତାଙ୍କୁ ନ ଜଣାଇ ନ ଶୁଣାଇ ଏପରି ଭାବରେ—

ସଂଘମିତ୍ରା—ବିଚାରଶୂନ୍ୟ ହୋଇ ଏହା ମୁଁ କରିନାହିଁ, ଜୟପାଳ ! କାରଣ ମୁଁ ଜାଣେ, ତୁମେ ଯଦି ସ୍ୱୀକାର କର, ମଗଧ ସମ୍ରାଟ୍‌ଙ୍କ ଅନୁମତି ପାଇବା ମୋହ ପକ୍ଷରେ କଠିନ ହେବ ନାହିଁ; ମୋ ଅନୁରୋଧରେ ତାଙ୍କ ଆଦେଶକୁ ବିନା ଆପତ୍ତିରେ ସେ ଫେରାଇ ନେଇ ପାରନ୍ତି ।

ଜୟପାଳ—( ଧୀର ଅଥଚ ଦୃଢ଼ ସ୍ୱରରେ ) କିନ୍ତୁ ମୁଁ ? ମୁଁ ମଧ୍ୟ ନିଜର ଏହି ଗୋପନ ମୁକ୍ତିକୁ ପ୍ରଶ୍ରୟ ଦେବି; କାରଣ ମଗଧ ଜେମା ମୋ ସହିତ ଅକସ୍ମାତ୍ ପ୍ରଣୟରେ ଆବଦ୍ଧ ହୋଇଛନ୍ତି ?

ସଂଘମିତ୍ରା—(ବ୍ୟଥିତ ସ୍ୱରରେ) ଅକସ୍ମାତ୍ ! ହାଃ ହାଃ, ତାହାହେଲେ ଖାଲି ଏତିକି କହ—ତୁମେ ମୋତେ ଘୃଣା ଚକ୍ଷୁରେ ଦେଖ, କାରଣ ମୁଁ କଳିଙ୍ଗର ଶତ୍ରୁ ରାଜ୍ୟର କନ୍ୟା । ଶତ୍ରୁକଣ୍ଠରେ

ବୁଲବାବେଳେ ନିର୍ଲଜ୍ଜ ପରି ମୋହର ରୂପ ଗୁଣର ଯେଉଁ ସ୍ତୁତିବାଦ କରିଥିଲ, ତାହା ତେବେ କେବଳ ମିଥ୍ୟା ଓ ଛଳନା ! କହ ଜୟପାଳ ! ଦିନକ ପାଇଁ ମୋତେ ତୁମେ ହୃଦୟରେ ସ୍ଥାନ ଦେଇ ନାହିଁ ?

ଜୟପାଳ—(ଚିନ୍ତିତ ହୋଇ ) ନା, ମତାମତର ଅଧିକାର ବନ୍ଦୀର ନାହିଁ । ବନ୍ଦୀକର୍ତ୍ତା ମୋହର ହତ୍ୟାର ଆଦେଶ କରିଅଛନ୍ତି, ମୁଁ ତାହା ପାଳନ କରିବ । ତୁମର କୃପାଦୃଷ୍ଟିରେ ପଡ଼ି ମୁକ୍ତି ଲାଭକରିବା ସେ ମୋହ ପକ୍ଷରେ ଅପରାଧ । ଆଜି ଯେବେ ତୁମ ପ୍ରତି ଆକୃଷ୍ଟ ହେବାର କେବେ କିଛି ସୂଚନା ଦେଇଅଛି, ତେବେ ତାହା କ୍ଷଣିକର ଖିଆଲ ଭାବି ଭୁଲିଯାଅ, ଜେମା !

(ଘାତକ ଚଣ୍ଡଗିରିର ପ୍ରବେଶ)

ଚଣ୍ଡଗିରି—( ଅଭିବାଦନ କରି ) ଜେମାଦେଈ ! ସମୟ ଅତୀତ ହୋଇଯାଉଚି ।

ସଙ୍ଘମିତ୍ରା—ଅଳ୍ପକ୍ଷଣ ଚଣ୍ଡଗିରି ! ଆଉ ଅଳ୍ପକ୍ଷଣ ଅପେକ୍ଷା କର ।

(ଚଣ୍ଡଗିରିର ପ୍ରସ୍ଥାନ)

ଜୟପାଳ—ଛି ଛି ଜେମା, ସମ୍ରାଟ୍ ନନ୍ଦିନୀ ତୁମେ—ଚଣ୍ଡଗିରି ତୁମକୁ ଅନୁଯୋଗ କରିବ···ନିଜର ଭୃତ୍ୟ ପାଖରେ ରାଜଜେମାଙ୍କର ଅନୁନୟ !

ସଙ୍ଘମିତ୍ରା—ଜୟପାଳ ! ଚଣ୍ଡଗିରିର ପାଦଦେଶରେ ପଡ଼ିବାକୁ ମଧ୍ୟ ବର୍ତ୍ତମାନ ମୋହର ସଙ୍କୋଚ ନାହିଁ, ଜାଣ ?

ଜୟପାଳ—କାହିଁକି ? ମୋହରି ପାଇଁ ? ଛି ଛି, ଘାତକ ହାତରୁ ବନ୍ଦୀକୁ ମୁକୁଳାଇ ଆଣି ସମ୍ରାଟ୍‌କନ୍ୟା ତାହା ସହିତ ଗୋପନରେ ପ୍ରଣୟର ଆଲୋଚନା କରିବେ, ଏ ଘଟନାଟା

ମତେ ସବୁଠାରୁ ବେଶି ବ୍ୟଥାଦେଉଛି, ଜେମା—ମୃତ୍ୟୁଠାରୁ ମଧ୍ୟ ଅଧିକ ।

ସଂଘମିତ୍ରା—ସେଥିପାଇଁ ମୁ ହିଁ କେବଳ ଦାୟୀ, ମୁ ହିଁ କେବଳ ଦୋଷୀ ।

ଜୟପାଳ—(ମୃଦୁ ହସି) ନିଜେ ବନ୍ଦୀ ହୋଇ ମୁଁ ବନ୍ଧର ଆଦେଶ ମାଇ ସାରିଚି । ଅନ୍ୟକୁ ମୋହପାଇଁ ଦୋଷୀ ଦେଖିବାକୁ ଗୃହେଁ ନାହିଁ । କ୍ଷମାକର ସଂଘମିତ୍ରା ! ମଗଧର ରାଜନନ୍ଦିନୀଙ୍କ ସଙ୍ଗେ ଏକାନ୍ତରେ ପ୍ରଣୟ ପ୍ରସଙ୍ଗ ଆଲୋଚନା କରିବାକୁ ବନ୍ଦୀର ଅଧିକାର ନାହିଁ । ଏ ପ୍ରଣୟରେ ତୁମେ ବିସ୍ମରଣ୍ନ୍ୟ ହୋଇପଡ଼ିଚ । ହୋଇପାରେ, ଶିଶକୁଞ୍ଜରେ କେବେ କେବେ ତୁମ ସାଥିରେ ମିଳନ ହୋଇଥିଲା ଏବଂ ସେତେବେଳେ ହୁଏତ ଅଲକ୍ଷ୍ୟରେ ତୁମ ପ୍ରତି ବେଶି ମନୋଯୋଗ ଦେଇଥିବ । କିନ୍ତୁ—

ସଂଘମିତ୍ରା—ସେ ତୁମର ପ୍ରକୃତ ମନୋଭାବ ନୁହେଁ ? କହ ଜୟପାଳ ! ସେ ତେବେ ଖାଲି ଶୈଶବର ନିମେଷକ୍ରୀଡ଼ା, ଯୌବନର କ୍ଷଣିକଚାଞ୍ଚଲ୍ୟ, ପୌରୁଷର ଅତର୍କିତ ସ୍ଖଳନ !

ଜୟପାଳ—( କ୍ଷଣକାଳ ଚିନ୍ତାକରି ) ନା, ସେ କଥା ପ୍ରକାଶ କରିବାକୁ ତ ମୋତେ ଅବସର ମିଳିନାହିଁ !

ସଂଘମିତ୍ରା—( ଅଳ୍ପ ହସି ) କିନ୍ତୁ ବର୍ତ୍ତମାନ ଯଦି ମହାରାଜାଙ୍କଠାରୁ ତୁମର ମୁକ୍ତିର ଆଦେଶ ଆସେ, ତାହାହେଲେ ଅବସର ମିଳିବ ତ ? ତାହାହେଲେ ସେହିପରି ତରଳ ଭାଷାରେ କହିବ ତ—ସଂଘମିତ୍ରା ! ତୁମର ହାସ୍ୟ ହିମାଳୟର ପ୍ରଭାତ ତୁଷାରଠାରୁ ଅଧିକ କମନୀୟ, ତୁମର ଚକ୍ଷୁ ଶରତର ପଞ୍ଚମୀ ଜ୍ୟୋତ୍ସ୍ନାଠାରୁ ଅଧିକ ମୃଦୁ, ତୁମର ଗତି ଚୈତ୍ରର ସୁଦୂର-ଚପଳାଠାରୁ ଅଧିକ ନୃତ୍ୟଶୀଳ—କହିବ ତ ଜୟପାଳ ?

ଜୟପାଳ—ମଗଧ ସମ୍ରାଟ୍ ଏତେ ଶୀଘ୍ର ତାଙ୍କର ମତ ବଦଳାଇ ପାରନ୍ତି ? ଶତ୍ରୁ ଉପରେ ହତ୍ୟାର ଆଦେଶ । ଏହା ଯେ ସ୍ୱପ୍ନଠାରୁ ମଧ୍ୟ ଅସମ୍ଭବ !

ସଂଘମିତ୍ରା—ହଁ ଜୟପାଳ ! ସେହି ଆଦେଶ ଫେରାଇବାପାଇଁ ମୁଁ ମୋହର ଭାଇ କୁନାଳଙ୍କୁ ମହାରାଜାଙ୍କ ନିକଟକୁ ପଠାଇଅଛି ଏବଂ ଏହି କାରଣରୁ ଚଣ୍ଡଗିରିଠାରୁ ସମୟ ଗୃହେଁ । ଅଳ୍ପକ୍ଷଣ ଭିତରେ ତୁମର ମୁକ୍ତିର ଆଦେଶ ଆସିବ ଏବଂ ତା ପରେ ? ( ଆଶା ଏବଂ ଆନନ୍ଦରେ ସଂଘମିତ୍ରାଙ୍କର ସମସ୍ତ ଦେହ ହସି ଉଠିଲା ।)

ଜୟପାଳ—(ସ୍ତବ୍ଧ ହୋଇ ) ମହାରାଜାଙ୍କଠାରେ ମୋହର ଜୀବନ ଭିକ୍ଷା କରିଚ ? କାରଣ ତୁମ ସାଥିରେ ମୁଁ ପ୍ରଣୟରେ ଆବଦ୍ଧ ? ଛି ଛି, ବଡ଼ ଅନ୍ୟାୟ ଜେମା ! କିପରି ଏହି ହୀନ ପ୍ରସ୍ତାବ କରିବାକୁ ଗଲ ? ନା, ନା, କୁନାଳଙ୍କୁ ଫେରାଇ ଆଣ ! ମୁଁ ମଗଧ ରାଜାଙ୍କର ବିଜିତ ଶତ୍ରୁ । କଳିଙ୍ଗ ଯୁଦ୍ଧରେ ପରାସ୍ତ ହୋଇ ସଙ୍ଗେ ସଙ୍ଗେ ପୁଣି ପ୍ରଣୟର ଅଭିନୟ ! ନା ନା, କୁନାଳଙ୍କୁ ଫେରାଇଆଣ, ଜେମା ! ଇସ୍, ତୁମର ମଧ୍ୟ ଏପରି ପିଲାମି ଅଛି !

ସଂଘମିତ୍ରା—(ତୀବ୍ର ସ୍ୱରରେ ) କାହିଁକି ଜୟପାଳ, ଭୟ ହେଉଚି ? ଯୁଗ ଯୁଗ ଧରି ପୁରୁଷ ନାରୀକୁ ଯେଉଁ ଭୟ କରିଆସିଚି, ସେହି ଭୟ ? ବିଶ୍ୱର ଯେଉଁ ଆଦିମ ବାସ୍ତବତା ନାରୀ ପାଖରେ ପୁରୁଷକୁ ବିଚଳିତ କରେ, ତାହାରି ଭୟ ? ଯେଉଁ ଭୟରେ ନାରୀ-ପୁରୁଷର ସମ୍ବନ୍ଧ ହତ୍ୟାଠାରୁ ମଧ୍ୟ ଅଧିକ ଗୋପନୀୟ, ମିଥ୍ୟାଠାରୁ ମଧ୍ୟ ଅଧିକ ଲଜ୍ଜାକର ? ଯେଉଁ ଭୟରେ ପୁରୁଷ ନାରୀକୁ ଅବିଶ୍ୱାସ କରେ, ନାରୀ ପୁରୁଷକୁ

ବୁଝିପାରେ ନାହିଁ ଏବଂ ଦୁହିଁଙ୍କର ମସ୍ତିଷ୍କ ବିକୃତ ହୁଏ—ସେହି ଭୟ ?

ଜୟପାଳ—ନାହିଁ ସଂଘମିତ୍ରା, ଭୟ କରିବାକୁ ହେଲେ କଳିଙ୍ଗ ରାଜପୁତ୍ରର କନ୍ଦନ ତାହା ଶିକ୍ଷାକରିବା ଦରକାର । ସେଥିରେ ପୁଣି ନାରୀ—ପୁରୁଷର ଭୟ ! ହାଃ, ହାଃ । କିନ୍ତୁ ଜେମା, ମୋ' ପ୍ରତି ଯେ ଏତେଦୂର ଆସକ୍ତ, ସେ ମୋହର ଇଜ୍ଜତକୁ ହାନିକରି ଏତେ ବଡ଼ ହୀନ ପ୍ରସ୍ତାବ ଆଣି ପାରନ୍ତା କିପରି ?

ସଂଘମିତ୍ରା—ହୀନ ପ୍ରସ୍ତାବ ! ମୁଁ ତୁମର ଜୀବନକୁ ଭଲ ପାଏ ଜୟପାଳ, ମୃତ୍ୟୁକୁ ନୁହେଁ ।

ଜୟପାଳ—(ଉତ୍ତେଜିତ ହୋଇ )ଜୀବନ ? କାହାକୁ ତୁମେ ଜୀବନ କହ ? ବୋଇତଟିକୁ ପାଣି ଭିତରେ ବୁଡ଼ାଇଦେଇ, ନାଉରୀ ଯେବେ ପଳାଇଯାଇ ନିଜକୁ ବଞ୍ଚାଏ, ସେ ତାହାର ଜୀବନ ? କଳିଙ୍ଗର ଆକାଶ ପୃଥିବୀ ଯେତେବେଳେ ବିକଳ ବିଳାପରେ ମଥିତ, କଳିଙ୍ଗର ସକଳ ପଥ ରୁଧିର-ରାଗରେ ରଞ୍ଜିତ, ସେତିକିବେଳେ କଳିଙ୍ଗର ରାଜକୁମାର ମଗଧ ଜେମାଙ୍କର ପାଣିଗ୍ରହଣ କରି ମଙ୍ଗଳ ଶଙ୍ଖ ମହୁରୀ ବଜାଇ ଯାତ୍ରାକରିବ—ଆଜି ସେ ତାହାର ଜୀବନ ?

ସଂଘମିତ୍ରା—କିପରି ବୁଝିବି ଜୟପାଳ ! କଳିଙ୍ଗର ଲକ୍ଷ ଲକ୍ଷ ଲଳନାର କ୍ରନ୍ଦନରୋଳ ଯେଉଁ ହୃଦୟରେ ବାଜିଚି, ନିଜ ଆଗରେ ଗୋଟିଏ ନାରୀର ଅନ୍ତରକୁ କେଉଁ କଠୋରତାରେ ସେ ଦଳି ଦେଇପାରେ !

ଚଣ୍ଡଗିରି—(ପ୍ରବେଶ ଓ ଅଭିବାଦନ କରି) ଜେମାଦେଈ, ରାଜଆଜ୍ଞା ଲଙ୍ଘନ ହୋଉଅଛି ।

ଜୟପାଳ—(ଚମକି ପଡ଼ି ) ନା; ଯଥେଷ୍ଟ ହୋଇଚି—ଆଜି ହେବା ପାଇଁ ହେବ ନାହିଁ; ଯାଉଚ୍ଛି ଜେମା, ତୁମକୁ ବିମୁଖ କରି ! ତୁମର ଅର୍ଘ୍ୟକୁ ଅପାସରେ ଢାଳିଚି ଜେମା, ସେଥିପାଇଁ ମୁଁ କ୍ଷମାର ଯୋଗ୍ୟ । ଜାଣେ ତୁମର ଅନ୍ତର ବ୍ୟଥିତ ହେବ । ସେହି ବ୍ୟଥାର ଉପଶମ ଲାଗି ଏ ଜୀବନଟା ଦେଇଥାନ୍ତି ହେଲେ ! କିନ୍ତୁ ଜେମା, ଏ ଜୀବନର ପୁଣ୍ୟ ଯେ ଅତି ସାମାନ୍ୟ । ଆଜି ଏହି ଅଯୋଗ୍ୟ ପାଇଁ ତୁମର ବିଳାପ ଯଦି ସତ୍ୟ ହୁଏ, ତେବେ ତାହା କେବଳ ଧ୍ୱନିରେ ସମାପ୍ତ ହେବନାହିଁ, କେବଳ ଦୀର୍ଘ-ଶ୍ୱାସରେ ନିଭିଯିବ ନାହିଁ । ସେ ବେଦନ କଳିଙ୍ଗ-ମଗଧରେ ରୁଦ୍ଧ ହେବନାହିଁ—(ସଂଘମିତ୍ରାଙ୍କର ଆଖିପତା ଓଦା ହୋଇଉଠିଲା) ଦେଶେ ଦେଶେ, ସ୍ଥାନେ ସ୍ଥାନେ ତାହା ମୁଖରିତ ହୋଇ ଉଠିବ —ମୃତ୍ୟୁ ପାଇଁ ନୁହେଁ ଜେମା, ସତ୍ୟ ପାଇଁ; ମିଥ୍ୟା ପାଇଁ ନୁହେଁ, ବାସ୍ତବ ପାଇଁ । ହଅ, ଚଣ୍ଡଗିରି ! ଏ ହାତଟା ତ ମୋହର କୌଣସି ଘାତକର ହାତଠାରୁ ଅଳ୍ପ କଠୋର ନୁହେଁ ! ନୁହେଁ ଜେମା ? (ସଂଘମିତ୍ରାଙ୍କୁ ମୃଦୁହାସ୍ୟରେ ଗୃହିଁ କ୍ଷିପ୍ରଗତିରେ ଚଣ୍ଡ-ଗିରିର ଶିଥିଳ ହାତରୁ ଛୁରୀ କାଢ଼ିନେଲେ ଏବଂ ଆଖି ପଲକରେ ନିଜ ବକ୍ଷରେ ବିଦ୍ଧକରି ଭୂମି ଉପରେ ଲୁଣ୍ଠିତ ହେଲେ)

ସଂଘମିତ୍ରା—(ଦ୍ରୁତପଦରେ ବାଧାଦେବାକୁ ଯାଇ ଜୟପାଳଙ୍କୁ ତଳେ ପଡ଼ିଯାଇଥିବାର ଦେଖିଲେ । ତତ୍ପରେ ତାଙ୍କ ବକ୍ଷ ଉପରେ ହାତ ରଖି ଗଦ୍ ଗଦ୍ ଭାଷାରେ ) ଜୟପାଳ—ଜୟ —ଅନ୍ତକ ! ତୁମେ ଯେ ମୋହର ସର୍ବସ୍ୱ ଘେନିଗଲେ !

ଜୟପାଳ—(କ୍ଷୀଣ କଣ୍ଠରେ ସଂଘମିତ୍ରାଙ୍କ ହାତ ଉପରେ ହାତରଖି) ଆଜି ସଂଘମିତ୍ରା ! ତୁମର ଏହି ସ୍ପର୍ଶ ଭିତରେ ମୁଁ ଯେ ସମସ୍ତ ବିଶ୍ୱର ସ୍ପର୍ଶ ଅନୁଭବ କରୁଚି ।

ସଂଘମିତ୍ରା—(ବିଳାପ ଓ କାତର ଭାବ) ହାୟ କପଟ ! ହଁଅ ତେବେ ସେହି ଛୁରିକା—ତୁମର ଉଷ୍ଣ ରକ୍ତରେ ଆପ୍ଳୁତ— ଏ ବକ୍ଷର ରକ୍ତ ସଙ୍ଗେ ତାକୁ ଯୋଗକରେଁ ଜୀବନବ୍ୟାପୀ ତୃଷ୍ଣାର ନିବୃତ୍ତି ପାଇଁ । (ଜୟପାଳଙ୍କ ବକ୍ଷରୁ ଛୁରି କାଢ଼ିବାକୁ ଯିବାରୁ ସେ ସେହି ଛୁରି ଉପରେ ହାତରଖି ବାଧାଦେଲେ ।)

ଜୟପାଳ—(କ୍ଷୀଣ ଅନୁନୟ ସ୍ୱରରେ) ନା, ନା, ଏ କଣ ? ଚଣ୍ଡଗିରି, ଛୁରି କାଢ଼ିନେଇ ରାଜକେମାଙ୍କ ଜୀବନ ରଖ । (ଧୀରେ ଧୀରେ) ପ୍ରଣୟ ଅପେକ୍ଷା ଜୀବନଟା ଯଥେଷ୍ଟ ବଡ଼, ସଂଘମିତ୍ରା ! (ଚଣ୍ଡଗିରି ସହସା ଛୁରି କାଢ଼ି ନେବା ସଙ୍ଗେ ସଙ୍ଗେ ଜୟପାଳଙ୍କର ବକ୍ଷଦେଶ ରକ୍ତସ୍ନାତ ହୋଇଉଠିଲା; କିନ୍ତୁ ମୃତ୍ୟୁ ପୂର୍ବରୁ ତାଙ୍କର ମୁଖ ବିକୃତ ହେଲନାହିଁ । ସମ୍ଭବତଃ ଏହି ସମ୍ବାଦ ଦେବାପାଇଁ ଚଣ୍ଡଗିରି ସେଠାରୁ ଦ୍ରୁତ ପ୍ରସ୍ଥାନ କଲା) (ସଂଘମିତ୍ରା ବିମୂଢ଼ ଦୃଷ୍ଟିରେ ଜୟପାଳଙ୍କ ରୁଧିର ଧାରକୁ ଚାହିଁ ରହିଥିବା ସମୟରେ ଗୀତ ଗାଇ ଗାଇ କୁନାଳଙ୍କର ପ୍ରବେଶ ।)

ଏ ଜୀବନ କୂଳେ କି ଗୀତ ଗାଇଲୁ,
ହେ ପ୍ରଣୟି !
ଗଭୀର ନିଶାରେ କି ବେଣୁ ବାଇଲ,
ହେ ପ୍ରଣୟି !
ଦିଶ ହିଶ ଆଜ ହେଲ ସଚେତନ
ଛୁଟିଲ ନିଦ୍ରା ଛୁଟିଲ ସ୍ୱପନ
ସଜଳ ନୟନେ କିପାଇଁ ଚାହିଁଲ,
ହେ ପ୍ରଣୟି !
ଦୂରେ ଦୂରେ ତବ ମିଶିଗଲା ଗୀତ ଛନ୍ଦ
ତମସାର କୋଳେ ଭାସିଗଲା ଫୁଲ ଗନ୍ଧ

ନିଶା ଅଭିସାରେ ହେଲ ଅନୁରାଗୀ
କେଉଁ ପୀରତିର ପରଶିଯିବ ଲାଗି
କେଉଁ ବିଧୁରାଗ ପରାସ ବାହାଲ,
ହେ ପ୍ରଣୟି !

ସଂଘମିତ୍ରା—(କୁନାଲଙ୍କ ନିକଟକୁ ଉଠିଆସି) ଭାଇ କୁନାଲ !

କୁନାଲ—ଏ କଣ ସଂଘମିତ୍ରା ? କଣ୍ଠ ଏପରି ସଜଳ କାହିଁକି ? ଜୟପାଳ କେଉଁଠାରେ ?

ସଂଘମିତ୍ରା—ଜୟପାଳଙ୍କ ଶବ ଏଠାରେ ଶୟାନ ।

କୁନାଲ—(ବିସ୍ମିତ ହୋଇ) କଣ ! ଚଣ୍ଡଗିରି ଏହି ଅଳ୍ପ ସମୟ ଅପେକ୍ଷା କଲା ନାହିଁ !

ସଂଘମିତ୍ରା—ଚଣ୍ଡଗିରିର ଅପେକ୍ଷାକୁ ଜୟପାଳ ଗ୍ରହଣ କଲେ ନାହିଁ,ଭାଇ ! ସେ ଯେ ଚଣ୍ଡଗିରିଠାରୁ ଅଧିକ କୃତାନ୍ତ !

କୁନାଲ—ତାହାହେଲେ ନିଜ ହାତରେ—କିନ୍ତୁ ମହାରାଜ ତାଙ୍କର ତ ମୁକ୍ତି ଆଦେଶ ଦେଇଅଛନ୍ତି !

ସଂଘମିତ୍ରା—ସେ ମୁକ୍ତିକୁ ଜୟପାଳ ଗ୍ରହଣ କରନ୍ତେନାହିଁ—ମୃତ୍ୟୁକୁ ହିଁ ସେ ତାଙ୍କର ସର୍ବଶ୍ରେଷ୍ଠ ମୁକ୍ତିବୋଲି ଜ୍ଞାନ କଲେ ।

କୁନାଲ—ସଂଘମିତ୍ରା ! ଉଠ ଭଉଣୀ, ଆଉ ବିଳାପ କରିବାର ବେଳ ନାହିଁ । ଜୟପାଳଙ୍କ ସମାଧିର ବ୍ୟବସ୍ଥା କରି ତୁମକୁ ସଙ୍ଗେ ସଙ୍ଗେ ପିତାଙ୍କ ନିକଟକୁ ଯିବାକୁ ହେବ । ଉଠ ! ଆଉ ବିଳମ୍ବ ନୁହେଁ ।

ସଂଘମିତ୍ରା—କାହିଁକି ? ସମ୍ରାଟ୍ କଣ ଅସୁସ୍ଥ ହୋଇପଡ଼ିଚନ୍ତି ?

କୁନାଲ—ଅସୁସ୍ଥ ହେବାଠାରୁ ଯଥେଷ୍ଟ ବେଶି । ତୁମେ ଯେପରି ଜୟପାଳଙ୍କ ମୃତ୍ୟୁକୁ ନିଜର ସର୍ବଶ୍ରେଷ୍ଠ ସତ୍ୟ ବୋଲି ମନେକରୁଛ, ମହାରାଜ ମଧ୍ୟ ସେହିପରି ମୋହର ଅନ୍ଧ

ଦଶାଟାକୁ ତାଙ୍କ ଜୀବନର ଦାରୁଣ ସତ୍ୟରୂପେ ଗ୍ରହଣ କରିଅଛନ୍ତି । ତାଙ୍କ ସାଥିରେ ବଡ଼ ଅସମୟରେ ଦେଖା କଲି ସଂଘମିତ୍ରା ! କେବଳ ଜୟପାଳଙ୍କ ଜୀବନ ପାଇଁ···କିନ୍ତୁ ଫଳ ହେଲା ସାଂଘାତିକ ।

ସଂଘମିତ୍ରା—(ଦୁଃଖ ଓ ବିସ୍ମୟରେ) କଣ ହେଲା ?

କୁନାଳ—ମୋହର ଅନ୍ଧଦଶା ଶୁଣିସାରି ମହାରାଜ ମୋଟେ ଦୁଇଟି କଥା କହିଛନ୍ତି, ତାହା ପରଠାରୁ ସମ୍ପୂର୍ଣ୍ଣ ନୀରବ ।

ସଂଘମିତ୍ରା—ମୋଟେ ଦୁଇଟି କଥା ?

କୁନାଳ—ହଁ ଭଉଣୀ ! ଏହା ଗୋଟିଏ ବିଷମ ଅସ୍ୱାଭାବିକ ଅବସ୍ଥାର ଲକ୍ଷଣ । ବିମାତାଙ୍କର ନୃଶଂସ ବ୍ୟବହାର ଜାଣିପାରି ପ୍ରଥମ ଆଦେଶ କଲେ ତିଷ୍ୟରକ୍ଷିତାଙ୍କର ଯାବଜ୍ଜୀବନ ନିର୍ବାସନ ।

ସଂଘମିତ୍ରା—ନିର୍ବାସନ !

କୁନାଳ—ଶିରଚ୍ଛେଦ ଆଦେଶ ମୋହର ଅନୁରୋଧରେ ରହିତ ହେଲା । ଦ୍ୱିତୀୟ ଆଦେଶ କଲେ ଜୟପାଳଙ୍କର ମୁକ୍ତି । ତାହାପରେ ଶିବିରରୁଦ୍ଧ କରି ରହିଛନ୍ତି । କାହାରିକୁ ସାକ୍ଷାତ୍ ପାଇଁ ମନା । ଗଣଭର୍ତ୍ତି ସେଠାରେ କଥା କହିବାକୁ ଚେଷ୍ଟା କରୁଥିଲେ, କିନ୍ତୁ ଅତ୍ୟନ୍ତ ବିରକ୍ତି ପ୍ରକାଶ କରି ତାଙ୍କୁ ମଧ୍ୟ ସଙ୍ଗେ ସଙ୍ଗେ ବିଦାୟ କରିଦେଲେ ।

ସଂଘମିତ୍ରା—ହଁ ଭାଇ, ତୁମ ପ୍ରତି ତାର ସ୍ନେହ ଯେପରି ବିମୂଢ଼ ଥିଲା, ତୁମର ଦୁଃଖ ତ ତାଙ୍କୁ ଅଧିକ ବିମୂଢ଼ କରିବାର କଥା ।

କୁନାଳ—କିନ୍ତୁ ମୋ ଦୁଃଖରେ ମୁଁ ନିଜେ ତ ଏତେଦୂର ବିଚଳିତ ନୁହେଁ ? ଲୋକେ କହନ୍ତି, ପିତା ନ ହେଲେ ପୁତ୍ରସ୍ନେହ ବୁଝିବା କଠିନ ହୋଇପାରେ । କିନ୍ତୁ ସେଥିରେ ସେ ଏତେଦୂର ବିବ୍ରତ ହେବାର ମୁଁ ତ ଆଉ କେବେ ଦେଖି ନାହିଁ ?

ସଂଘମିତ୍ରା—ଆଜି କଣ, କଳିଙ୍ଗ ଯୁଦ୍ଧ ? କଳିଙ୍ଗ ଯୁଦ୍ଧରେ ସେ କ୍ଲାନ୍ତ ହୋଇ ପଡ଼ିବେ ! ଯୁଦ୍ଧ ଯେ ତାଙ୍କର କ୍ରୀଡ଼ାଠାରୁ ମଧ୍ୟ ଅଧିକ ଆହ୍ଲାଦର ସାମଗ୍ରୀ ? ତାହାହେଲେ ସଙ୍ଗେ ସଙ୍ଗେ ପୁଣି ସିଂହଳ ଅଭିଯାନର ଆୟୋଜନ ହୁଅନ୍ତା କାହିଁକି ?

କୁନାଳ—ଅସମ୍ଭବ ନୁହେଁ, ସଂଘମିତ୍ରା ! କ୍ରୀଡ଼ାରେ ମଧ୍ୟ ମନୁଷ୍ୟର କ୍ଲାନ୍ତି ଆସେ । ଐଶ୍ୱର୍ଯ୍ୟ, ବିଭୂତି, ଖ୍ୟାତି-କ୍ଷମତା, ସ୍ୱାସ୍ଥ୍ୟ-ସୌନ୍ଦର୍ଯ୍ୟ—କେଉଁଠାରେ ତାହାର କ୍ଲାନ୍ତି ନାହିଁ ? ବାରମ୍ବାର ନିଜକୁ ଠକି ସେ କ୍ଲାନ୍ତିକୁ ଆମେ ଦୂରରୁ ଦୂରକୁ ଠେଲିନେଉଁ । କିନ୍ତୁ ଅଲକ୍ଷରେ ତାହା ମଧ୍ୟେ ମଧ୍ୟେ ଆମକୁ ଗ୍ରାସ କରି ବସେ—ଜଗତର ସବୁ ତ୍ରୁଟି ଅଭାବ ପାଇଁ ନିଜକୁହିଁ ଦିନେ ଦାୟୀ ବୋଲି ଜ୍ଞାନ କରୁଁ । ଯାହା ଆହାର କରୁ, ଉପାର୍ଜନ କରୁଁ, ତାକୁ ମଧ୍ୟ ଦିନେ ଅପହରଣ ବୋଲି ମନେ କରୁଁ ।

ସଂଘମିତ୍ରା—ତାହାହେଲେ ମହାରାଜ ଯେ ଜୟପାଳଙ୍କ ପ୍ରତି ଏତେ ସହଜରେ ମୁକ୍ତିର ଆଦେଶ କଲେ, ତାହାର କାରଣ ତୁମର ଏହି ଅନ୍ଧଦଶା ?

କୁନାଳ—ହଁ, ସଂଘମିତ୍ରା ! ଜୟପାଳଙ୍କ ମୁକ୍ତିର ଅନୁରୋଧ ମୋହଠାରୁ ଶୁଣିସାରି ଉତ୍ତର କଲେ, "ହେଉ କୁନାଳ, ତୁମର ପ୍ରାପ୍ୟ ତୁମେ ତ ମୋହଠାରୁ ଆଦାୟ କରି ନେଇଅଛ, ସଂଘମିତ୍ରା ଆଉ ବାକି ରହିବ କାହିଁକି ? ସମସ୍ତ ଜଗତଟାର ଦେୟ ଯେ ଭାରତ ସମ୍ରାଟକୁ ପରିଶୋଧ କରିବାକୁ ପଡ଼ିବ !" ଯାଅ ଭଉଣୀ ! ଏପରି ଅବସ୍ଥାରେ ତାଙ୍କ ପାଖରେ ତୁମର ରହିବାହିଁ ବେଶି ଦରକାର ବୋଲି ମୁଁ ଭାବୁଛି । ଯାଅ, ଆଉ ବିଳମ୍ବ ନୁହେଁ ! ପ୍ରତି ମୁହୂର୍ତ୍ତରେ ହିଁ ଜଗତ୍ଟା ସତ୍ୟ ହୋଇ ଉଠୁଛି, ଜେମା ! ସେଥିପାଇଁ ଆମକୁ ପ୍ରସ୍ତୁତ ହେବାକୁ ପଡ଼ିବ ।

ସଂଘମିତ୍ରା—କିନ୍ତୁ ମୁଁ ଯାଇ ମହାରାଜଙ୍କୁ କି ସାନ୍ତ୍ୱନା ଦେବି, ଭାଇ !

କୁନାଳ—ତାଙ୍କର ନିକଟତମ ଆତ୍ମୀୟମାନଙ୍କ ଭିତରୁ ତୁମ ଛଡ଼ା ଆଉ କିଏ ଅଛି, କହ ? ନିଜର ସହଧର୍ମିଣୀ ତାଙ୍କର ଶତ୍ରୁତାଚରଣ କରି ନିର୍ବାସିତା । ତାହାପରେ ତ ମଗଧର ଭ୍ରାତୃବିରୋଧ ଲାଗି ରହିଅଛି । ସୁସୀମ ସିନା ନାହିଁତ, ବୀତଶୋକଙ୍କୁ କିଏ ବିଶ୍ୱାସ କରିପାରେ ? ମଗଧର ଘରେ ଘରେ ତ ବିଦ୍ରୋହ-ନିଆଁ କୁହୁଳି ଉଠୁଛି !

ସଂଘମିତ୍ରା—କିନ୍ତୁ ତୁମର କିଣ ଏହିକ୍ଷଣି ପିତାଙ୍କ ପାଖରେ ରହିବା ଉଚିତ ନୁହେଁ, ଭାଇ ?

କୁନାଳ—ମୁଁ ? ମତେ ଯେ ବର୍ତ୍ତମାନ ସିଂହଳ ଯିବାକୁ ହେବ ! କଳିଙ୍ଗ ସମରଠାରୁ ସିଂହଳ ଯୁଦ୍ଧ ଯେ ଅଧିକ ଭୀଷଣ ହେବ, ସଂଘମିତ୍ରା ! ସେଥିପାଇଁ ତ ସିଂହଳକୁ ଟିକିଏ ଆଗରୁ ପ୍ରସ୍ତୁତ କରିବା ଦରକାର ! ମୋତେ ଆଉ ସମୟ କାହିଁ, କହ ?

ସଂଘମିତ୍ରା—(ଅଭିମାନରେ) କିନ୍ତୁ ମୋହରି କେବଳ ସମୟ ଅଛି ? ମଗଧ ସମ୍ରାଟ୍‌ଙ୍କ ଲାଗି ମୋହରି କେବଳ କର୍ତ୍ତବ୍ୟ ଅଛି, ତୁମର ନାହିଁ ?

କୁନାଳ—ତୁମ କର୍ତ୍ତବ୍ୟ ତୁମକୁ ହିଁ ସ୍ଥିର କରିବାକୁ ହେବ, ଭଉଣୀ ! ମୁଁ କେବଳ ଭାବୁଥିଲି, ମହାରାଜଙ୍କର ଏପରି ଦୁର-ବସ୍ଥାରେ ତୁମେ ପାଖରେ ରହିଲେ ତାଙ୍କର ଅବା କିଛି-ଉପକାର ହୁଅନ୍ତା !

ସଂଘମିତ୍ରା—ନୁହେଁ କିଣ ! କାରଣ ମୋହରି ପାଇଁ ସେ ଜୟପାଳଙ୍କୁ ବିନା ଆପତ୍ତିରେ ମୁକ୍ତିଦାନ କରିଅଛନ୍ତି । ଆଉ ତୁମେ ? ତୁମେ ଏହି ଅନ୍ଧଦଶାରେ ଏକା ହୋଇ ସିଂହଳ ଯିବ ?

କୁନାଲ—ହଁ ଜେମା ! ସିଂହଳକୁ ପୂର୍ବପର ଟିକିଏ ପ୍ରସ୍ତୁତ କରିବାକୁ ହେବ ।

ସଂଘମିତ୍ରା—କାହିଁକି ? ଯୁଦ୍ଧପାଇଁ ?

କୁନାଲ—(ମୃଦୁ ହସି) ହଁ ହଁ, ଯୁଦ୍ଧପାଇଁ—କିନ୍ତୁ ସେ ଯୁଦ୍ଧ ଟିକିଏ ନୂଆଧରଣର—କଳିଙ୍ଗ ସମରଠାରୁ ତାହା ଆହୁରି ବିଚିତ୍ର ହେବ, ଆହୁରି ଚମତ୍କାର ! ସେ ଯୁଦ୍ଧକୁ କିଏ ଆସିବେ ଜାଣ ? ସିଂହଳର ବାଳକ, ବନିତା ଓ ବୃଦ୍ଧ । ସେହିମାନେ ଆସି ମଗଧ ସେନାର ସମ୍ମୁଖରେ ଠିଆହେବେ—ସାଧାରଣ ବେଶ ପିନ୍ଧି, ଖାଲିହାତରେ । ସେଇମାନଙ୍କ ଉପରେ ହିଁ ମଗଧସେନାର ଶରବୃଷ୍ଟି ହେବ । କେମିତି···ଖୁବ୍ ଚମତ୍କାର, ନୁହେଁ ?

ସଂଘମିତ୍ରା—(ଉଦ୍‌ବେଗ ସହ) ଆଉ ସିଂହଳ ପକ୍ଷରେ ଅଗ୍ରଣୀ ହେବ କିଏ ଜାଣ ? ମଗଧ ସମ୍ରାଟଙ୍କ କନ୍ୟା—ସଂଘମିତ୍ରା ।

କୁନାଲ—(ସବିସ୍ମୟ) ତୁମେ ? ସିଂହଳ ଯିବ ?

ସଂଘମିତ୍ରା—ନହେଲେ ସିଂହଳର ଝିଅ ପୁଅମାନଙ୍କ ଆଗରେ କିଏ ଠିଆ ହେବ, ଭାଇ ? ମରିବାକୁ ହେଲେ ଆଗ ହୋଇ ମରିବ ଚେତେବେ କିଏ ?

କୁନାଲ—ସଂଘମିତ୍ରା ! ତୁମେ ବର୍ତ୍ତମାନ ଗୋଟାଏ ସଦ୍ୟ ଆଘାତରେ ବିଚଳିତ ହୋଇ ପଡ଼ିଚ ଟିକିଏ ସ୍ଥିର ହୋଇ ବିଚାର କର; ଭଉଣି !

ସଂଘମିତ୍ରା—ସ୍ଥିରହେବି ? କାହାକୁ ତୁମେ ସ୍ଥିର କହ ? ସେ ଆଘାତ ଯେ ସତ୍ୟର ଆଘାତ ! ସେ ଆଘାତରେ ଉତ୍ତୁଙ୍ଗ ହିମାଳୟ ମଧ୍ୟ ତୃଣ ପରି ନମ୍ର ହୁଏ; ସମ୍ରାଟ ମୁକୁଟ ଖସି ଭୂମିତଳେ ଲୁଣ୍ଠିତ ହୁଏ । ସେହି ଆଘାତ ହିଁ ମୋ ହାଡ଼ରେ ମୁହୁର୍ମୁହୁଃ ବାଜି ଉଠିଚି । ଏତେବେଳେ ଆଜି ତାହାରି ଡାକ

ମୋ କାନରେ ଲାଗିଛି । ସ୍ଥିର ହେବ କପରି ? ତାହାଠାରୁ ମୁହଁଫେରାଇବା ଯେ ଅସମ୍ଭବ; ରାଜରାଜେଶ୍ୱର ପକ୍ଷରେ ମଧ୍ୟ । ସେ ଆଘାତ ଯେ ମୋହର ଦ୍ୱାର ମୋଚନ କରି ପଥ ଉପରକୁ ଡାକୁଛି—ସ୍ଥିର ହେବି କପରି ?

କୁନାଳ—ସେଥିପାଇଁ ଚିନ୍ତା ଓ ସମୟ ଦରକାର ଜେମା । ସେ ପଥ ଅତି ଦୁର୍ଗମ !

ସଂଘମିତ୍ରା—କାରଣ ତାହା ଅତି ସହଜ । ଚିନ୍ତା ଓ ସମୟର ସାହାଯ୍ୟ ନେଇ ସହଜକୁ ଆମେ ଜଟିଳ କରୁଁ । ଯେ ନିଜେ ଆସି ହାତ ପାଖରେ ଧରା ଦିଏ, ତାହାଠାରୁ ମୁହଁ ଫେରାଉ । ପ୍ରତି ମୁହୂର୍ତ୍ତରେ ଆଖି ଆଗରେ ଜରାବ୍ୟାଧିଗ୍ରସ୍ତ ଜୀବନକୁ ଦେଖୁଁ, ପ୍ରତିକ୍ଷଣରେ ମରଣର ବିଳାପ ଶୁଣୁଁ । ସେଥିପାଇଁ ବ୍ୟଥା ଜନ୍ମିଲେ ତାକୁ କହୁ ଦୁର୍ବଳତା । ନିଜେ ମରି ଅନ୍ୟକୁ ମାରୁଁ । ଅନ୍ତରର ଅନ୍ଧକୂପରେ ଆବଦ୍ଧ ରହି ନିଜକୁ ଠକୁଁ । କିନ୍ତୁ ଭାଇ ! ଜଗତରେ ଯେଉଁ ଅଳ୍ପ କେତେ ଜଣ ବଞ୍ଚନ୍ତି, ସେମାନେ କେବଳ ସହଜରେହିଁ ବଞ୍ଚନ୍ତି । ଆଉ ଆମେ ? ଆମେ ଏହି ସହଜକୁହିଁ ସବୁଠାରୁ ବେଶି ଭୟ କରୁଁ, ଭାଇ ! ଆକାଶରେ ଏହି ଗ୍ରହ ତାରା ସହଜରେ ପ୍ରକାଶ ପା'ନ୍ତି । ଯେଉଁ ରଶ୍ମି ପୃଥିବୀକୁ ଆଲୁଅ ଦିଏ ତାହାର ପଥ ତ ବଙ୍କା ନୁହେଁ ! ଏହି ଦଯ୍ୟା ନଈଟି ଅତି ସହଜରେହିଁ ନିଜ ପଥ ବାଛି ନେଇଛି ! ଏହି ଧଉଳ ପାହାଡ଼, ବୃକ୍ଷ-ଲତା, ପଶୁପତଙ୍ଗ ସବୁ ତ ସହଜ ! କିନ୍ତୁ ମଣିଷ—ମଣିଷତ କାହିଁ ସହଜ ହେଲା ନାହିଁ !

( ଯବନିକା )

# ପଞ୍ଚମ ଅଙ୍କ

[ ଶିବିର ଭିତରେ ଆଶୋକ ନିଦ୍ରିତ । କିନ୍ତୁ ମଝିରେ ମଝିରେ କଡ଼ ମୋଡ଼ିବାରେ ଓ ହାତ ପାଦ ହଲିବାରେ ତାଙ୍କର ନିଦ୍ରା ଭଲ ହେଉ ନାହିଁ ବୋଲି ମନେହୁଏ । ଅଳ୍ପ ଦୂରରେ ଦୁଇଜଣ ସୈନିକ ଜଗି ରହିଚନ୍ତି । ରାତି ଅଧିକ ହେବାରୁ ସେମାନଙ୍କ ଆଖିରେ ମଧ୍ୟ ତନ୍ଦ୍ରା ଲାଗିଚି । ଅଶୋକଙ୍କର ମୁଖ ଅସ୍ୱାଭାବିକ ବ୍ୟସ୍ତତାରେ ମଳିନ । ସମସ୍ତ ଦେହରେ ରକ୍ତ ଯେପରି ସେଠାରେ ଜମା ହୋଇଅଛି ଶିବିର ଭିତରେ କ୍ଷୀଣ ପ୍ରଦୀପ ଆଲୋକରେ ତାଙ୍କର ଲଲାଟର ରେଖାକୁଞ୍ଚନ ଏବଂ ଘନ ଘନ ମୁଖର ଭାବ ପରିବର୍ତ୍ତନରୁ ମନେ ହୁଏ, ଜାଗରଣ ସମୟରେ ଅନ୍ତରର ଯେଉଁ ବ୍ୟସ୍ତତାକୁ ସେ ଗୋପନ କରିବାକୁ ଚାହୁଁ ଥିଲେ, ସ୍ୱପ୍ନରେ ତାହା ଅବାଧରେ ଆତ୍ମପ୍ରକାଶ କରିଅଛି । ତାଙ୍କର ଐଶ୍ୱର୍ଯ୍ୟମୟ ଜୀବନରେ ମଧ୍ୟ ଗୋଟିଏ ବିରାଟ ଦୈନ୍ୟର ଛାୟା ଲୁକକାୟିତ । ରକ୍ଷୀ ଦୁଇଜଣ କିଛିକ୍ଷଣ ପଦଚାରଣ କରିବା ପରେ— ]

ପ୍ରଥମ ରକ୍ଷୀ—ଦଣ୍ଡେ ଖାଲି ଆଖି ମୁଦି ଦେବି ଭାଇ ! ତାହା ପରେ ପଛେ ତୁ ଟିକିଏ ଶୋଇପିବୁ ।

ଦ୍ୱିତୀୟ ରକ୍ଷୀ—ନା ନା, ଆଖି ମୁଦିବା ସାଙ୍ଗେ ସାଙ୍ଗେ ତୋହର ପୁଣି ନାକ ଡାକିବ । ସେଥିରେ ମହାରାଜ ଉଠିବେ, ଶିବିର ଗୋଟାକର ସମସ୍ତେ ଧନୁ ଶର ଧରି ଧାଇଁବେ, ଆଉ ଦଶ ବର୍ଷ ପାଇଁ ମୋ ଆଖିରୁ ନିଦ ଛୁଟିଯିବ । ସେଦିନ ତୁ ଯାହା ମତେ କହିଲୁ, ଖାଲି ବୁଦ୍ଧି ଦିଶିଗଲା—ନାକଟାକୁ ତୋହର ଚିପି ଧରିଲି ବୋଲି ସିନା ! ନ ହେଲେ ତୁ କଣ ଆଉ ସଂସାରରେ ରଖିଥିଲୁ ମତେ ? ଆଉ ଦିନେ ପୁଣି ସେହି କଥା କରିବି ? କେବେ ନୁହେଁ । ଏମିତି ଯାହାର ନିଦ, ସେ ରଜାଘର ଚାକିରି କରିବ କାହିଁକି ? ଘର ଭିତରେ ଶେଯ ପାରି ଘୁଙ୍ଗୁଡ଼ି ମାରୁନୁ ?

ପ୍ରଥମ ରକ୍ଷୀ—ଭାଇ, ରଜାଘର ଚାକିରି କଲି ବୋଲି ଶୋଇବି ନାହିଁ, ଏ କଥା ତ କେହି ମତେ ଆଗରୁ କହି ନାହିଁ, ଜାଣିବି କେମିତି ? ଦେଖୁଛୁ ତ ଆଠ ଦିନ ହେଲା ଆଖିରେ ଟିକିଏ କସାପଡ଼ି ନାହିଁ । ଦଣ୍ଡେ ଘଡ଼ିଏ ଯାହା ଟିକିଏ ଆଖି ମୁଦି ଦେଖିବାକୁ ବେଳ ମିଳୁଛି, ସେଥିରେ ପୁଣି ଏ ବାଟୋଇଗୁଡ଼ାଙ୍କର ହଣାମରା ଦେଖି ସବୁବେଳେ ଛାତି ଥରୁଛି । ହିହ ହାତ ସବୁ-ବେଳେ ସଳ ଉଠୁଛି—କୋଉଁଠି ଗୋଟାଏ ବସିଗଲା ପରା···ଶରଟାଏ ଲାଗିଗଲା ପରା ! ଆଜ ଏତେଦିନକେ ଟିକିଏ ଯାହା ଫୁରସତ୍ ମିଳିଛି—ତେଣେ ଭଲ ନେହୁରା ହେଉଛି, ଭାଇ ! (ଶୋଇବାକୁ ଉଦ୍ୟତ)

ଦ୍ୱିତୀୟ ରକ୍ଷୀ—ହାଁ, ଖବରଦାର୍ ! ସାଙ୍ଗେ ସାଙ୍ଗେ ଯାଇ ସରଦାର୍‌ଙ୍କୁ କହିଦେବି । ତେଣିକି ଭଲ ହୋଇ ଶୋଇ ପଡ଼ିବୁ ଯେ ଆଉ ନିଦ ଭାଙ୍ଗିବ ନାହିଁ, ବୁଝିଲୁ ?

ପ୍ରଥମ ରକ୍ଷୀ—(ଭୟ ଓ ବିସ୍ମୟରେ ଏଁ ? ଏତେ ଅବିଶ୍ୱାସୀ ତୁ ? ତୋ କଥା ଭଲ ମୁଁ କାହା ଆଗରେ କହେଁ ?

ଦ୍ୱିତୀୟ ରକ୍ଷୀ—ମୋ କଥା କିଏ ଶୁଣୁଛି ? ମୁଁ କଣ ସ୍ନେହ କରୁଛି ନା ନାଶ କରୁଛି ? ପନ୍ଦର ବର୍ଷ ହେଲା ଚାକିରି କଲିଣି, ମୋ କାମରେ ଜଣେ କିଏ ଗୋଟାଏ ଖଇଗୁ ବାହାର କରି ଦେବ ? ତୁ ନା, ତୋହ ପରି ପଣେ !

ପ୍ରଥମ ରକ୍ଷୀ—(ସୁପାରିସ ଆଶାରେ) ହେଁ ହେଁ, ନାହିଁ ଭାଇ ! ସେ କଥା କଣ ତତେ ମୁଁ କହିଲି ? ହେଲେ ଭାଇ, ତୋ ପରି ସମସ୍ତେ କଣ ଚାକିରି ବଜେଇ ପାରିବେ ? ଚାକିରି ପାଇଁ ଭୋକ, ଶୋଷ, ନିଦ, ଅଳସ ତୋହ ପରି ପୁଣି ଛାଡ଼ି ପାରିବ କିଏ, କହିଲୁ ? ହେଲେ ଆମର ପରା ମଣିଷ ଜନ୍ମ । ତୋହ ସାଥିରେ ତୁ ଆଉ ସମସ୍ତଙ୍କୁ ତଉଲିଲେ ଚଳିବଟି କି ?

ଦ୍ୱିତୀୟ ରକ୍ଷୀ—କାହିଁକି ? ଦରମା ନେଲାବେଳକୁ ତମର ସବୁ ତ ଉଣା ପଡ଼ୁ ନାହିଁ ? ଖାଲି କାମ ବେଳକୁ ସବୁ ରୋଗଯାକ ମାଡ଼ି ବସୁଚି ! ବାର ରୂପରେ ମଟେ ଫୁସୁଲାଇ ତମେ ସବୁ କିଏ ଶୋଇବ, କିଏ ଖେଳିବ; ଆଉ ଧରପଗଡ଼ ବେଳକୁ କେହି ଜଣେ ପିଠିରେ ପଡ଼ିବ ନାହିଁ ବାଃ !

ପ୍ରଥମ ରକ୍ଷୀ—ଦେଖିବୁନି ଭାଇ ! ଆଜି କେଉଁ କେହି ଉଠିବେ ନାହିଁ, କି ଜାଣିବେ ନାହିଁ । ମହାରାଜ ଉଠିଲେ ବି କଣ କଥା କହିବେ ? ଦେଖୁଚୁ ତ ରାଜକୁମାରଙ୍କ ସାଥିରେ ଯେତିକି କଥା ହୋଇଥିଲେ, ସେତିକି—ଆଉ ଥରେ ଭଲ ମୁହଁ ଫିଟେ-ଇଲେଣି ? (ନିମ୍ନ ସ୍ୱରରେ) କିରେ, ରାଇଜ ଗୋଟାକର ପରା ମୁହଁ ବନ୍ଦ କରେଇଥିଲେ ? ତାଙ୍କ ମୁହଁ ବନ୍ଦ ନ ହୋଇ ଯିବ କୁଆଡ଼େ ? ଉପାର ସେରିକି କଣ ସବୁଦିନେ ତିନି ପାଆ ହୋଇ ରହିଥିବ କି ? ଦିନେ ତ ପୁଣି ଚାରି ପାଆ ହେବ !

ଦ୍ୱିତୀୟ ରକ୍ଷୀ—(ଖିତ ଦୃଷ୍ଟିରେ ଅଶୋକଙ୍କୁ ଚାହିଁ ଓ ପରେ) ଚୁପ୍,

ଚୁପ୍ ! ତତେ ଏ ସବୁ କଥା କହିବାପାଇଁ କିଏ ପଚାରିଥି ରେ ? ଖବରଦାର୍ !

ପ୍ରଥମ ରକ୍ଷୀ—କଣ କରିବ ଭାଇ ! ଶୋଇବାକୁ ତ ଟିକିଏ ଦେଉ-ନାହୁଁ, କଥା ନ ଗପିଲେ ନିଦ ଛାଡ଼ିବ କେମିତି ? କଣ କହୁଚୁ, କହିଲୁ ? ଦେଖୁଚୁ ତ ଆଜି ଯୁଦ୍ଧ ସରିବାରୁ କୁମ୍ଭକର୍ଣ୍ଣ ପରି ସମସ୍ତେ ଏକ୍ଷଣି ଶୋଇପଡ଼ିଚନ୍ତି । ସେଥିରେ ଭଲ ତାଙ୍କ ଉପରେ ହାତି ଚାଲିଗଲେ ବି ଉଠିବେ ? ଟିକିଏ ଖାଲି ଏଇଠି ପଡ଼ିଯାଏଁ ଭଲ—ତେଣିକି ତୁ ଯାହା କହିବୁ ତାହା କରିବି । ଏ ମାସ ଦରମାରୁ ପଛେ ଅଧେ ଦେବି ତୋତେ ।

ଦ୍ୱିତୀୟ ରକ୍ଷୀ—(ପ୍ରଥମ ରକ୍ଷୀର ପ୍ରତିଶ୍ରୁତିରେ ପ୍ରସନ୍ନ ହୋଇ)କିନ୍ତୁ ତୋର ନାକ ?

ପ୍ରଥମ ରକ୍ଷୀ—(ବିରକ୍ତ ହୋଇ) ନାକ ! ନାକଟାକୁ ପଛେ ସେଦିନ ପରି ମୁହଁ ଧରିବୁ—ଆଉ କଣ ?

ଦ୍ୱିତୀୟ ରକ୍ଷୀ—ନାକ ମୁଦିଲେ ପୁଣି ପାଟି ଯେ କଥା କହିବ ? ହଉ ଶୁଣ ତେବେ ମୂଳରୁ କିନ୍ତୁ କହି ରଖୁଚି, ପାଟି ନାକ ଦୁଇଟା ଯାକ ମୁହଁ ଧରିବି । ନ ହେଲେ ତୁ ଯେମିତି ବକ-ବକଉ—

ପ୍ରଥମ ରକ୍ଷୀ—( କ୍ରୋଧ ଓ ବିରକ୍ତିରେ ) କେତେ ଫଟେଇ ହେଉଚୁରେ ? ମୁଁ ଯେବେ ବ୍ରହ୍ମା ହୋଇଥାନ୍ତି, ସେହି ପୁଣି ବେଦ ହୁଅନ୍ତା; ଜାଣୁ ?

ଦ୍ୱିତୀୟ ରକ୍ଷୀ—(ବିଦ୍ରୂପ କରି) ହଃ ! ବେଦରେ ଆଉ କଣ କଣ ଅଛି କ—ସେଦିନ ଗୁଡ଼ିଆଣୀ ଘରୁ ଆରିଷା ପିଠା ଚୋରି, ଆଉ ଧରାପଡ଼ିଯାଇ ତା ସାଥିରେ କଜିଆ ।

ପ୍ରଥମ ରକ୍ଷୀ—(ଆଖି ତରାଟି) ଚୁପ୍ ! ତତେ ଏ କଥା କିଏ କହିଲା ?

ଦ୍ୱିତୀୟ ରକ୍ଷୀ—(ଦୃଢ଼ସ୍ୱରରେ) ତୁନି କରିଚୁ ।

ପ୍ରଥମ ରକ୍ଷୀ—(ବିସ୍ମିତ ହୋଇ) ମୁଁ କହୁଚି ?

ଦ୍ୱିତୀୟ ରକ୍ଷୀ—(ହସି ହସି) ମନେନାହିଁ ? ସେଦିନ ରାତିରେ ନିଦରେ ଯେତେବେଳେ ବେଦ କହୁଥିଲୁ ? ମୁଁ ଏଣେ ପଚାରିବାକୁ, ତୋହର ତେଣେ ବଖାଣ ।

ପ୍ରଥମ ରକ୍ଷୀ—ଆଜି କଣ କହୁଚି ? (ଲଜ୍ଜା ଓ ବିରକ୍ତିରେ ସେ ବ୍ୟସ୍ତ ହୋଇପଡ଼ିଲା ।)

ଦ୍ୱିତୀୟ ରକ୍ଷୀ—ସବୁ କହୁଚୁ—ଘରଭିତର କଥାଗୁଡ଼ାକ—ତୁ ତୋହର ପୁଅକୁ କିପରି ଶିଖାଇଦେଉ, ଆଉ ସେ ତାହାର ମାଆକୁ ମାଡ଼ ଚଢ଼ାଏ ।

ଦ୍ୱିତୀୟ ରକ୍ଷୀ—ପାଜି ସଇତାନ ! ଆଗରୁ ପରି କହୁଥିଲି, ମତେ ତୁ ରଗେଇବୁ ନାହିଁ ? ରାଗିଲେ ମତେ ବେଶୀ ନିଦ ଆସେ ! (ସେଇଠାରେ ସେ ଶୋଇପଡ଼ିଲା ।)

ଦ୍ୱିତୀୟ ରକ୍ଷୀ—(ବସିପଡ଼ି ଓ ପ୍ରଥମ ରକ୍ଷୀକୁ ହାତରେ ହଲାଇ) କିରେ ବାଃ । ସାଙ୍ଗେ ସାଙ୍ଗେ ନିଦ ଆସିଗଲା ? ହଉ, ହଉ ତୋହରି ବେଦ ବାହାରିବା ଯାଏ ମୁଁ ମଧ୍ୟ ଏଇଠାରେ ଜଗି ରହିଲି ।(କିନ୍ତୁ ସେ ମଧ୍ୟ ଦୁଇ ପାଖକୁ ମୁଣ୍ଡ ଝୁଲାଇ ଢୁମାଇବାକୁ ଲାଗିବ ଏବଂ ଅଳ୍ପକ୍ଷଣପରେ ସେଇଠାରେ ଢଳିପଡ଼ି ନିଦ୍ରାଗଲା । ମୁହୂର୍ତ୍ତକପାଇଁ ସମସ୍ତ ଶିବିରଟି ଅନ୍ଧକାରରେ ଆଚ୍ଛନ୍ନ ହେଲା ଏବଂ ପର ମୁହୂର୍ତ୍ତରେ ଗୋଟାଏ ରକ୍ତରଶ୍ମି ଧୀରେ ଧୀରେ ସଞ୍ଚାଳିତ ହୋଇ ଅଶୋକଙ୍କର ଚକ୍ଷୁ ଓ ମୁଖକୁ ଆଲୋକିତ କଲା । ସେହିରଶ୍ମି ସଙ୍ଗରେ ସମସ୍ତ ଦେହ କଳା ପରିଧାନରେ ଆବୃତ କରି ଗୋଟିଏ ପ୍ରେତାତ୍ମା ତାଙ୍କର ନିକଟବର୍ତ୍ତୀ ହେଲେ । ରଶ୍ମିପାତରେ ତନ୍ଦ୍ରାଳସ ଆଖି ଖୋଲି ଅଶୋକ କ୍ଷଣକପାଇଁ

ଗୁହାଁଲେ ଏବଂ ଛତ୍ରପରେ ବନ୍ଦକରିଦେଲେ ।)

ପ୍ରଥମ ପ୍ରେତାତ୍ମା—(ଅଗ୍ରସର ହୋଇ) ମଗଧ ସମ୍ରାଟ୍ !

ଦ୍ୱିତୀୟ ପ୍ରେତାତ୍ମା—ଅଶୋକ !

ତୃତୀୟ ପ୍ରେତାତ୍ମା—ଶୁଣିପାରୁଚ, ମହାରାଜ !

ଅଶୋକ—(ବିଚଳିତ ଭାବରେ ଆଖି ଖୋଲି) ଏ କିଏ ତୁମେ ସବୁ କିଏ ? ମୁଁ କଣ ଶୋଇଛି ?

ଦ୍ୱିତୀୟ ପ୍ରେତାତ୍ମା—(ଚାଞ୍ଚଲ୍ୟ ଭାଷାରେ) ନାହିଁ, ନାହିଁ, ଗୁହାଁଚ ବର୍ତ୍ତମାନ— ଆଜଯାଏ କେବଳ ଶୋଇଥିଲି ।

ଅଶୋକ—କିନ୍ତୁ କିଏ ତୁମ୍ଭେମାନେ ? କାହା ଆଗରେ ଏପରି ଅସଂଯତ ଭାଷାରେ କଥା କହୁଚ, ଜାଣ ତ ?

ଦ୍ୱିତୀୟ ପ୍ରେତାତ୍ମା—(ଦୃଢ଼ ସ୍ୱରରେ) ଜାଣୁ—ମଗଧ ସମ୍ରାଟ୍‌ଙ୍କ ଆଗରେ—କଅଣ ? ଠିକ୍ ନୁହେଁ ? ହାଃ ହାଃ !

ଚତୁର୍ଥ ପ୍ରେତାତ୍ମା— ହାଃ ! ହାଃ ସମ୍ରାଟ୍ !

ପ୍ରଥମ ପ୍ରେତାତ୍ମା—ମଗଧ ସମ୍ରାଟ୍‌ଙ୍କଠାରୁ ଭାଷାର ସଂଯମ ଶିଖିବା-ପାଇଁ ଆସିଚୁ ଆମେ !

ଅଶୋକ—(ଅର୍ଦ୍ଧେକ ଗାତ୍ରୋତ୍ଥାନ କରିବାକୁ ଯାଇ କ୍ରୋଧ ବିସ୍ତୃତ ଦୃଷ୍ଟିରେ) ବିନାନୁମତିରେ—କିଏ ତୁମେ ମାନେ ?

ତୃତୀୟ ପ୍ରେତାତ୍ମା—(ତୀକ୍ଷ୍ଣ ସ୍ୱରରେ) ଠିକ୍ କଥା, ଠିକ୍ କଥା ! ମଗଧ ସମ୍ରାଟ୍‌ଙ୍କ ବିନାନୁମତିରେ କାହାର ଯେ ମରିବାକୁ ମଧ୍ୟ ଅଧିକାର ନାହିଁ !

ଚତୁର୍ଥ ପ୍ରେତାତ୍ମା—ଆମେ କିନ୍ତୁ କାହାରିକୁ ନ ଜଣାଇ ନ ଶୁଣାଇ ସମ୍ରାଟ୍‌ଙ୍କ ଶିବିର ଭିତରେ ପଶିଛୁଁ ।

ତୃତୀୟ ପ୍ରେତାତ୍ମା—(ବିଦ୍ରୂପ ସହ) ଉଃ, ବଡ଼ ଅପରାଧ ! କ୍ଷମା କର ମହାରାଜ !

ଦ୍ୱିତୀୟ ପ୍ରେତାତ୍ମା—କିନ୍ତୁ କ୍ଷମା କରିବାକୁ ଶିଖିଛ ତ ଅଶୋକ ? ସ୍ମରଣ କର—ସମସ୍ତ ଜୀବନରେ କେବେ କେଉଁଠି କାହାକୁ କ୍ଷମା କରି ପାରିଛ ?

ପ୍ରଥମ ପ୍ରେତାତ୍ମା—କ୍ଷମା ! ଭାରତ ସମ୍ରାଟ୍ କ୍ଷମା କରିବେ ! ଛି, ଛି, ସେ ଯେ କେବଳ ଦୁର୍ବଳ ଲୋକର ଛଳନା ! କାପୁରୁଷର ଲକ୍ଷଣ !

ଅଶୋକ—(କ୍ରୁଦ୍ଧ କଣ୍ଠରେ) କିଏ ଅଛରେ···ଏମାନଙ୍କୁ ଏଠାରୁ ବାହାର କର ।

ତୃତୀୟ ପ୍ରେତାତ୍ମା—(ବୃଦ୍ଧାଙ୍ଗୁଳି ଦେଖାଇ ଅଙ୍ଗଭଙ୍ଗୀରେ) ହାଃ ! ହାଃ ! ନାହିଁ, ନାହିଁ ମହାରାଜ ! କେହି ଆମକୁ ବାହାର କରିବା ଆଗରୁ ଆମେ ସମସ୍ତଙ୍କୁ ବାହାର କରିଦେଇ ଆସିଚୁଁ ।

ଦ୍ୱିତୀୟ ପ୍ରେତାତ୍ମା—ଆଜି ତୁମର ଶିବିର ଗୋଟାକୁ ଦଖଲ କରି ବସିଛୁ !

ଚତୁର୍ଥ ପ୍ରେତାତ୍ମା—କାରଣ ଆମେ ଏଠାରେ ଅଧିକାରୀ—କଳିଙ୍ଗ ସମର ଜୟ କରିଛୁଁ ଆମେ—ହାଃ ! ହାଃ !

ଅଶୋକ—(କ୍ରୋଧାନ୍ଧ ହୋଇ ଦୁର୍ଦ୍ଦମ ଚେଷ୍ଟାରେ ଶଯ୍ୟାରୁ ଉଠିବାକୁ ଗଲେ । କିନ୍ତୁ ଶକ୍ତିହୀନତାର ହତାଶାରେ ପୂର୍ବ ପରି ଶଯ୍ୟା ଉପରେ ପଡ଼ି ରହିଲେ । ମୁଖରେ ବୈଗୁଣ୍ୟ ଓ ନୈରାଶ୍ୟର ଛବି ଫୁଟି ଉଠିଲା) ଇସ୍ !

ପ୍ରଥମ ପ୍ରେତାତ୍ମା - ହେଉ, ହେଉ, ଆଉ ଟିକିଏ ଚେଷ୍ଟା ହେଉ, ମହାରାଜ ! ଭାରତ ସମ୍ରାଟ୍‌ଙ୍କ ଦେହରେ ଏବେ ମଧ୍ୟ ଯଥେଷ୍ଟ ଶକ୍ତି ଅଛି ସିଂହଳ ବିଜୟ ପାଇଁ ! (ଆଘାତ କରିବା ପାଇଁ ଅଶୋକ ନିଜର ହାତ ଉଠାଇବାକୁ ଚେଷ୍ଟା କଲେ, କିନ୍ତୁ ପାରିଲେ ନାହିଁ ।)

ତୃତୀୟ ପ୍ରେତାତ୍ମା—ଆହା ! ବଡ଼ ଦୁଃଖ, ବଡ଼ ଅପମାନ ! ନିଜର ହାତଟି ଉଠାଇବାକୁ ମଧ୍ୟ ଭାରତ ସମ୍ରାଟ୍‌ଙ୍କ ଦେହରେ ଶକ୍ତି ନାହିଁ ।

ଅଶୋକ—(କାତର ଦୃଷ୍ଟିରେ) ଏ କଣ ? ମୋ ଦେହର ସବୁ ଶକ୍ତି କିଏ ଶୋଷିନେଲା ?

ଚତୁର୍ଥ ପ୍ରେତାତ୍ମା—(ପରିହାସ ସ୍ୱରରେ) ଆମେ ! ଆମେ ସବୁ ଯେ ତୁମର ଶକ୍ତି ! ଆମକୁ ଛାଡ଼ ଯେ ଅସ୍ତିତ୍ୱ ତୁମର ନାହିଁ !

ତୃତୀୟ ପ୍ରେତାତ୍ମା—ତୁମର ଶକ୍ତି, ଐଶ୍ୱର୍ଯ୍ୟ, ଖ୍ୟାତି, ସମ୍ଭ୍ରମ—ସବୁ ଯେ ଗଢ଼ିଛୁ ଆମେ !

ଦ୍ୱିତୀୟ ପ୍ରେତାତ୍ମା—ଆଉ କଣ ଅଶୋକ ? ଆଉ କାହିଁରେ ଦରକାର ତୁମର ? ସିଂହଳ ବିଜୟ ? ଚୀନ ଅଭିଯାନ ?

ପ୍ରଥମ ପ୍ରେତାତ୍ମା—ରୂପବତୀ କନ୍ୟା ? ଶକ୍ତିଶାଳୀ ପୁତ୍ର ? ଗୁଣବତୀ ଭାର୍ଯ୍ୟା ? କାହିଁରେ ତୁମର ଅଭାବ ?

ଅଶୋକ—(ରୂଢ଼ ସ୍ୱରରେ) ଭାରତ ସମ୍ରାଟ୍ ଭିକ୍ଷା କରିବାକୁ କେବେହେଲେ ଜାଣି ନାହିଁ ! ତାହାର ପ୍ରାପ୍ୟ ସେ ନିଜ ଶକ୍ତିରେ ଆଦାୟ କରିଅଛି ।

ତୃତୀୟ ପ୍ରେତାତ୍ମା—ନିଜ ଶକ୍ତି ! ଆମେମାନେ ତେବେ କେହି ନୋହୁ ?

ଅଶୋକ—ଚାଲିଯାଅ !

ଚତୁର୍ଥ ପ୍ରେତାତ୍ମା—(ଅଙ୍ଗଭଙ୍ଗୀ କରି ବିଦ୍ରୂପରେ) ଚାଲିଯିବୁ ? କେଉଁ ଦେଶକୁ ଚାଲିଯିବୁ, ମହାରାଜ ? ସିଂହଳ ଗଲେ ବି ତୁମ ସାଥିରେ, ମଗଧ ଗଲେବି ତୁମ ସାଥିରେ !

ଦ୍ୱିତୀୟ ପ୍ରେତାତ୍ମା—ଆଉ ଚୀନ ଗଲେ ମଧ୍ୟ ତୁମ ସାଥିରେ ! ହାଃ—ହାଃ !

ପ୍ରଥମ ପ୍ରେତାତ୍ମା—ତୁମ ସାଥି ଆମେ ଛାଡ଼ିବୁ କପରି, ଅଶୋକ ?
ତୃତୀୟ ପ୍ରେତାତ୍ମା—ହାଃ, ହାଃ ! ତୁମ ସାଥିରେ ଯେ ଅଭେଦ ପ୍ରୀତି ଆମର !

ଅଶୋକ—(ବିବ୍ରତ ହୋଇ)ତୁମକୁ ସବୁ ମୁଁ ଜାଣେନାହିଁ, ଚାଲିଯାଅ ।
ପ୍ରଥମ ପ୍ରେତାତ୍ମା—(ଦୁଇପଦ ପକାଇ ଅଗ୍ରସର ହୋଇ ଏବଂ ଅଶୋକଙ୍କ ଆଗକୁ ଆସି) ସ୍ଥିର ହୁଅ ମହାରାଜ ! ଜାଣ, ଜାଣ, ସମସ୍ତଙ୍କୁ ଜାଣ । ଭଲ କରି ଟିକିଏ ଆଖି ଖୋଲି ଚାହିଁଲ ! ହଁ, ହଁ, ମଗଧ ସମ୍ରାଟ୍‌ଙ୍କ ଆଦେଶ ! କିନ୍ତୁ ସେଥିରୁ ଯେ ଆମେ ବହୁ ଦୂରରେ ! କାହାରି ଅନୁମତି ପାଇଁ ଅପେକ୍ଷା ରଖୁ ନାହିଁ—ଘର ବାହାର ସବୁ ସମାନ ଆମ ପାଖରେ କୋଠା କୁଡ଼ିଆର ପ୍ରଭେଦ ଆମକୁ ଜଣା ନାହିଁ !
ଅଶୋକ—(ଭୟମିଶା ବିସ୍ମୟ ଦୃଷ୍ଟିରେ ) ତୁମେ ?
ପ୍ରଥମ ପ୍ରେତାତ୍ମା—ହଁ—ହଁ ମୁହିଁ । ଚିହ୍ନି ପାରୁଚ ମଗଧ ସମ୍ରାଟ୍ ଏଥର ଚିହ୍ନି ପାରୁଚ ?
ଅଶୋକ—(ସ୍ତବ୍ଧ ବିସ୍ମୟରେ ଓ ବିସ୍ଫାରିତ ଦୃଷ୍ଟିରେ ) ତୁମେ ସୁ-ସୀ-ମ ?
ପ୍ରଥମ ପ୍ରେତାତ୍ମା—ଠିକ୍, ଠିକ୍ ! ସୁସୀମ ! ମଗଧ ସମ୍ରାଟ୍‌ଙ୍କର ଆପଣାର ବଡ଼ଭାଇ—ତକ୍ଷଶିଳାର ଅଧିନାୟକ ସୁସୀମ—ହାତରେ ଯାହାର ମଗଧ ସିଂହାସନକୁ ପାହାଚ ତିଆରି ହୋଇଚି—ମୁଣ୍ଡରେ ଯାହାର ଭାରତ ସମ୍ରାଟ୍‌ର ମୁକୁଟ ତିଆରି ହୋଇଚି—ଆଜ ରକ୍ତରେ ଯାହାର ? ସେହି ସୁସୀମ ମୁଁ ଅଶୋକ—ତୁମର ବଡ଼ଭାଇ, ତୁମର ଜୀବନ୍ତ ଈର୍ଷ୍ୟା ।
ଅଶୋକ—କିନ୍ତୁ ତୁମେ ଆଜ ଏତେ ଦିନ ପରେ ?
ପ୍ରଥମ ପ୍ରେତାତ୍ମା—ହଁ, ବହୁତ ଦିନ ବିତିଯାଇଅଛି, ନା ? ଆଜ

ସେ ଗୁଡ଼ାକ ପାସୋରି ଯିବାର କଥା । ସୁସୀମ କିନ୍ତୁ ସବୁ ଘଟଣା ଗୋଟି ଗୋଟି କରି ମନେରଖିଚି—ବଡ଼ ଅନ୍ୟାୟ, ନୁହେଁ କି ? ବର୍ଚ୍ଛା ମୂନରେ ତାହାର ଶ୍ରେଷ୍ଠ ପିଲଗୁଡ଼ାଙ୍କୁ ଶୋଇବା ଶେଯରୁ ଉଠାଇ ଆଣି ଆକାଶକୁ ନିକ୍ଷେପ କରାଯାଇଥିଲା, ସମ୍ରାଟ୍ଙ୍କ ଶିଶୁ ସନ୍ତାନଗୁଡ଼ିକ ଗାଢ଼ନିଦ୍ରାରେ ଶୋଇବେ ବୋଲି । ଆଉ ତାହାର ରାଣୀମାନଙ୍କର ଲଜ୍ଜା ହରଣ କରାଯାଇଥିଲା, ସମ୍ରାଟ୍ ମହିଷୀପତିଙ୍କ ଲାଗି ଅନୁରକ୍ତା ରହିବେ ବୋଲି । ଏ ସବୁ ତ ତୁମର ହୋଇସାରିଛି, ସେ କଥା ଆଉ ପଦାରେ ପକାଇବା ଉଚିତ କି ? ଛି ଛି ! ସୁସୀମ କିନ୍ତୁ ସବୁ କଥା ଗୋଟି ଗୋଟି କରି ମନେ ରଖିଚି, କିପରି ? ବଡ଼ ଅନ୍ୟାୟ, ନା ?

ଅଶୋକ—କିନ୍ତୁ ତୁମେ ଏପରି ଅସମୟରେ କାହିଁକି ?

ପ୍ରଥମ ପ୍ରେତାତ୍ମା—ଠିକ୍ କଥା—ବଡ଼ ଅସମୟ—ଭାରତ ସମ୍ରାଟ୍ଙ୍କ ସୁଖନିଦ୍ରାରେ ବ୍ୟାଘାତ କଲି । ଅନାହାରରେ ବନ୍ଦୀ କରାଯାଇ ଶେଷରେ ଯେଉଁ ଦିନ ସୁସୀମର ଶିରଚ୍ଛେଦ ହେଲା, ସେହିଦିନୁ ତ ଭାରତ ସମ୍ରାଟ୍ଙ୍କର ଆହାରଟା ରୋଚକ ଓ ନିଦ୍ରାଟା ସୁଖକର ହେଉଥିବ ! ବାସ୍ତବିକ୍, ବଡ଼ ଅସମୟ ! ସୁସୀମର ପରିବାରକୁ ମାରିଲାବେଳେ ମଗଧ ସମ୍ରାଟ୍ ଜ୍ୟୋତିଷୀର ମତ ନେଇ ଶୁଭ ସମୟ ସ୍ଥିର କରିଥିଲେ କି ନା ? (ଅନ୍ୟମାନଙ୍କ ପାଖକୁ ଫେରି ଠିଆହେଲା ।)

ଦ୍ୱିତୀୟ ପ୍ରେତାତ୍ମା—(ଆଗକୁ ଆସି) ମତେ ଚିହ୍ନି ପାରିବ ମହାରାଜ ! ଅଳ୍ପ ସମୟ ଆଗରୁ ତ ଦେଖାହୋଇଥିଲା !

ଅଶୋକ—କିଏ ଯୁବକ ? କଳିଙ୍ଗର ରାଜକୁମାର—ଜୟପାଳ ?

ଦ୍ୱିତୀୟ ପ୍ରେତାତ୍ମା—(ଦୃଢ଼ ସ୍ୱରରେ) ହଁ, ଜୟପାଳ ! ତୁମର ବିଜୟ ତୁମର ଖ୍ୟାତି, ତୁମର ସବୁ ଐଶ୍ୱର୍ଯ୍ୟର କେନ୍ଦ୍ର ।

ଅଶୋକ—(ବିସ୍ମିତ ହୋଇ) କିନ୍ତୁ ତୁମକୁ ତ ମୁଁ କ୍ଷମା ଦେଇଅଛି—ତୁମକୁ ବଧ କରିବାକୁ ଯେଉଁ ଆଦେଶ ଥିଲା ତାହାକୁ ତ ଫେରାଇ ଆଣିଛି !

ଦ୍ୱିତୀୟ ପ୍ରେତାତ୍ମା—ମହାରାଜାଙ୍କର ଅପାର ଦୟା ! କୁନାଲଙ୍କର ଅନ୍ଧଦଶା ଦେଖି ଜୟପାଳକୁ କ୍ଷମା ଦେଇଥିଲ, ନା ? କିନ୍ତୁ ତୁମ ହାତରୁ ମୁଁ ଜୀବନ ଫେରାଇ ଆଣନ୍ତି ତୁମରି କୃପାର ଦାସ ହୋଇ ?

ଅଶୋକ—ନା, ତୁମେ ରାଜପୁତ୍ରର ପ୍ରକୃତ ସମ୍ମାନ ରଖିଛ, କ୍ଷତ୍ରିୟର କର୍ତ୍ତବ୍ୟ କରିଛ ! କିନ୍ତୁ ମୁଁ ତୁମ ପାଇଁ କ'ଣ କରି-ପାରେ ?

ଦ୍ୱିତୀୟ ପ୍ରେତାତ୍ମା—ତୁମେ ମଧ୍ୟ ନିଜର କର୍ତ୍ତବ୍ୟ କରିଛ ମହାରାଜ ! କଳିଙ୍ଗରାଜଙ୍କ ବନ୍ଧୁ ନିମନ୍ତ୍ରଣର ଯଥାର୍ଥ ଉତ୍ତର ଦେଇଛ । କଳିଙ୍ଗର ମରିବାର କଥା ସେ ମରିଛି—ସେ ହୁଏ ତ ବଞ୍ଚିବାକୁ ନିଜର କର୍ତ୍ତବ୍ୟ ମନେକରୁଥିଲା । ତୁମେ କିନ୍ତୁ ତାକୁ ମାରିବାକୁ ନିଜର କର୍ତ୍ତବ୍ୟ ଜ୍ଞାନ କଲ—ନୁହେଁ କି ? ସେଥିରେ ପ୍ରଭେଦ ଆଉ କେତେ ?

ଅଶୋକ—(ସ୍ମରଣ କରି) କିନ୍ତୁ ଜୟପାଳ, ତୁମେ ମୋହର ଶତ୍ରୁ ପକ୍ଷର ଲୋକ । ମୋହ ବିରୁଦ୍ଧରେ ଅଭିଯୋଗ ଆଣିବା ତୁମ ପକ୍ଷରେ ଯେ ସ୍ୱାଭାବିକ ।

ଦ୍ୱିତୀୟ ପ୍ରେତାତ୍ମା—ହଁ, ହଁ, ମହାରାଜଙ୍କର ମିତ୍ରପକ୍ଷର ଲୋକ ମଧ୍ୟ ଅଛନ୍ତି ! ପାତ୍ରମନ୍ତ୍ରୀମାନେ ତ ସବୁ କ୍ଷଣରେ ଆଦେଶକୁ ରହିଁ ରହିଛନ୍ତି ।

ପ୍ରଥମ ପ୍ରେତାତ୍ମା—ଆଉ ପୁଣି ରୂପବତୀ କନ୍ୟା, ଶକ୍ତିଶାଳୀ ପୁତ୍ର, ଗୁଣବତୀ ଭାର୍ଯ୍ୟା !

ଚତୁର୍ଥ ପ୍ରେତାତ୍ମା—ସମ୍ରାଟ୍‌ଙ୍କ ଶେଷ ସନ୍ତାନ କନ୍ୟାଙ୍କର ପ୍ରଣୟ, ସମ୍ରାଟ୍‌ଙ୍କ ପୁତ୍ର ବିରୁଦ୍ଧରେ ମନ୍ତ୍ରୀଙ୍କର ଷଡ଼୍‌ଯନ୍ତ୍ର ଏବଂ ସମ୍ରାଟ୍‌ଙ୍କ ସିଂହଳ ବିଜୟ ବିରୁଦ୍ଧରେ—କିଏ ?

ତୃତୀୟ ପ୍ରେତାତ୍ମା—ନା, ନା, କେହି ନାହିଁ !

ଅଶୋକ—ଦୂର ହୁଅ, ସଇତାନ୍ ।

ଦ୍ୱିତୀୟ ପ୍ରେତାତ୍ମା—ବିଚଳିତ ହେବ ନାହିଁ ମହାରାଜ ! ହଁ, ହଁ, ତୁମର ବିରୁଦ୍ଧରେ ଷଡ଼୍‌ଯନ୍ତ୍ର । ତୁମରି ସିଂହଳ ବିଜୟ ବିରୁଦ୍ଧରେ ।

ଅଶୋକ—(ବିସ୍ମିତ ହୋଇ) ଷଡ଼୍‌ଯନ୍ତ୍ର ?

ଦ୍ୱିତୀୟ ପ୍ରେତାତ୍ମା—ଭାରତର ସମ୍ରାଟ୍ ! ଆଜି ତୁମର ସାହସ ଅଛି ସେମାନଙ୍କୁ ଦଣ୍ଡ ଦେବାପାଇଁ ? ପ୍ରତିଜ୍ଞା ତୁମର ସେହି ଇସ୍-ପାତରେ ବନ୍ଧା ହୋଇଛି ତ ? ନା ନା, ମଣିଷ ତୁମେ, ଦୁର୍ବଳ ତୁମେ ! ସେ ଦୁର୍ବଳତା ଦେଖାଇ ସାରିଛ ଆଜି, ନିଜ ପୁଅଙ୍କର ଅନ୍ଧଦଶାରେ । କିଣ—ମାନିବାକୁ ରାଜି ନୁହଁ ?

ଅଶୋକ—ଜୟପାଳ ! ତୁମେ ଯେ ମୋହର ବିଜିତ, ଏ କଥା କିଣ ଭୁଲିଯାଇଛ ?

ଦ୍ୱିତୀୟ ପ୍ରେତାତ୍ମା—ନାହିଁ ମହାରାଜ ! ଜୟପାଳ ଭୁଲି ନାହିଁ ଭୁଲିଛ ତୁମେ—ତୁମେ ଆଜି ଭୁଲିଚ ରାଜା, ତୁମ ମୋହ ଭିତରୁ ବିଜିତ କିଏ ? ହାୟ ଅଶୋକ ! ତୁମକୁ ଆଜି ଦୁର୍ବଳ ଦେଖି ମୋହର ମଧ୍ୟ ଦୟା ହେଉଛି । ନ ହେଲେ ଏ ପ୍ରଶ୍ନ ତ ମଗଧ ସମ୍ରାଟ୍‌ଙ୍କ ମୁହଁରୁ ବାହାରନ୍ତା ନାହିଁ ! କୁନାଳଙ୍କର ଦୁଃଖ ଦେଖି ହାରି ସାରିଛ—ଏବେ ଯାଇ ନିଜ କନ୍ୟା ସଂଘମିତ୍ରାଙ୍କୁ ପଚାର, ସେ ତୁମର ସବୁ ସନ୍ଦେହ ମେଣ୍ଟାଇ ଦେବେ କହିଦେବେ ଯଥାର୍ଥରେ ବିଜିତ କିଏ—ମଗଧ, ନା କଳିଙ୍ଗ—ତୁମେ ନା ମୁଁ !

ଅଶୋକ—ସଂଘମିତ୍ରା ? କୈଶୋରର ଚପଳତାରେ ସେ ସଦା ତୁମ ପ୍ରତି ଆକୃଷ୍ଟ ହୋଇଥାଏ, ସେଥିପାଇଁ ତୁମେ ଭାଗ୍ୟବାନ୍ । କିନ୍ତୁ ନିଜ ମତକୁ ସଂଶୋଧନ କରିବା ପାଇଁ ମଗଧ ସମ୍ରାଟ୍‌ର କନ୍ୟା ଭଲରୂପେ ଶିଖିଛି ।

ବିକ୍ଷିପ୍ତ ପ୍ରେତାତ୍ମା—ସତେ ? ସଂଘମିତ୍ରାଙ୍କର ଜନକ ବୋଲି ତୁମେ ତାଙ୍କୁ ଏତେଦୂର ବୁଝିଛ ? ଯାଅ ରାଜା, ଦେଖିବ ଯାଅ—ସଂଘମିତ୍ରା ତାଙ୍କର ମତ କିପରି ସଂଶୋଧନ କରିଅଛନ୍ତି ! ନାହିଁ ନାହିଁ—କଳିଙ୍ଗର ବେଶୀ ସଂଖ୍ୟାରେ ମନୁଷ୍ୟ ମାରିଛ ବୋଲି ତୁମେ ବିଜୟୀ ନୁହଁ । କଳିଙ୍ଗର ରାଜକୁଳ ଲୋପ ହେବାଟା ତାହାର ପରାସ୍ତର ପ୍ରମାଣ ନୁହେଁ । କଳିଙ୍ଗ ଲୋପ ହୋଇଛି ଜଗତର କଲ୍ୟାଣ ପାଇଁ, ତୁମର ସମରଲିପ୍‌ସାକୁ ଭୂମିତଳେ ଲୁଣ୍ଠିତ କରିବାକୁ, ତୁମର ସନ୍ତାନମାନଙ୍କୁ ତୁମ ବିରୁଦ୍ଧରେ ସଜାଡ଼ିବାକୁ—ତୁମର ସିଂହଳ ବିଜୟ କଳ୍ପନା ସମୂଳେ ପଣ୍ଡ କରିବା ଲାଗି । ସେଥିପାଇଁ ସଂଘମିତ୍ରା ଆଜି ବ୍ରତଗ୍ରହଣୀ । ଯାଅ ରାଜା, ତୁମର ପୁଅ ଝିଅଙ୍କୁ ପଚାର, ସମସ୍ତ ସଂସାରକୁ ପଚାର—କଳିଙ୍ଗ ସମରରେ ଜିତିଛି କିଏ—ତୁମେ ନା ମୁଁ !

ଅଶୋକ—(ଦୃଢ଼ ଅଥଚ ଗମ୍ଭୀର ସ୍ୱରରେ) ତାହାହେଲେ ତୁମେ ଜିତିଛ, ଆଉ ମଗଧ ସମ୍ରାଟ୍ ହାରିଛି ? କିନ୍ତୁ ଜାଣିରଖ ଜୟପାଳ, ହାରିବାକୁ ହେଲେ ମଧ୍ୟ ମଗଧ ସମ୍ରାଟ୍ ଦୁର୍ବଳ ପରି ହାରେ ନାହିଁ । ଜିତିଲେ ଯେପରି, ହାରିଲେ ମଧ୍ୟ ସେହିପରି । ସେ ତାହାର ସମ୍ପୂର୍ଣ୍ଣ ପ୍ରାପ୍ୟ ପୃଥିବୀ ଉପରୁ ଆଦାୟ କରିଥାଏ । ଜିତିବାଟା ଯେପରି, ହାରିବାଟା ମଧ୍ୟ ତାହାର ସେହି ପରିମାଣରେ ହିସାବ । (ଅପରକୁ ଉଦ୍ଦେଶ୍ୟ କରି) କିନ୍ତୁ

ତୁମେ କିଏ ? ଏପରି ବିରୂପ କାହିଁକି ? ଦେହ ଗୋଟାକ କଳା ଦାଗ, ସ୍ତନରୁ ରକ୍ତ ଝରୁଛି— ତୁମର ବସନ କାହିଁ, ଭୂଷଣ କାହିଁ—ଇସ୍, ମୁହଁଟା ଏପରି ବିକୃତ କିଆଁ ? ଆଜି ଏ କଣ—ତୁମ ଦେହରୁ କଞ୍ଚା ମାଂସର ଗୋଟାଏ ତୀବ୍ର ପୋଡ଼ା ଗନ୍ଧ ବାହାରି ମୋହର ଶ୍ୱାସରୁଦ୍ଧ କରୁଛି ।

ତୃଷ୍ଣାପ୍ଳ ପ୍ରେତାତ୍ମା—(ନାରୀକଣ୍ଠରେ) ହାଃ ହାଃ ! ମନେ ନାହିଁ ମହାରାଜ, ରାଜ ଉଦ୍ୟାନରେ ଅଶୋକଗଛର ଡାଳ ଭାଙ୍ଗି ଥିବା ଘଟଣା ? ମନେନାହିଁ ?

ଅଶୋକ—(ବ୍ୟଥିତ କଣ୍ଠରେ) କିଏ ତୁମେ ନାରୀ ? ମୁଖରେ ତୁମର ଅଗ୍ନି ଜଳୁଛି, ଦେହଟା ତୁମର ଭସ୍ମ ଲେପିତ···

ତୃଷ୍ଣାପ୍ଳ ପ୍ରେତାତ୍ମା—ନାହିଁ ମହାରାଜ ! ମୁଁ ନାରୀ ନୁହେଁ, ପୁରୁଷ ନୁହେଁ—ଗୋଟାଏ ଦର୍ପଣ । ସେ ଦର୍ପଣରେ ତୁମେ ନିଜର ରୂପ ଦେଖୁଛ । ସେ ଅଗ୍ନି ତୁମରି ମୁହଁର, ସେ କଳା ଦାଗ ତୁମରି ଦେହର, ସେ ରକ୍ତ ତୁମରି ସ୍ତନର । ଆଜି ସେହି ପୋଡ଼ାଗନ୍ଧ--ସେ କେବଳ ତୁମରି ମାଂସର ମହାରାଜ !

ଅଶୋକ—(କାତର କଣ୍ଠରେ)ମୋହରି ?

ତୃଷ୍ଣାପ୍ଳ ପ୍ରେତାତ୍ମା—ହଁ ହଁ, ନିଜକୁ ନିଜେ ପୋଡ଼ିଛ ତୁମେ, ନିଜକୁ ନିଜେ ମାରିଛ—ଆଉ କାହାରିକୁ ନୁହେଁ ।

ଅଶୋକ—(ନିଜକୁ ନିଜେ କହିବା ପରି) ତୁମେ ମଗଧର ଲଳନା ?

ତୃଷ୍ଣାପ୍ଳ ପ୍ରେତାତ୍ମା—ନାହିଁ ନାହିଁ, ମୁଁ ତୁମର ଲଜ୍ଜା, ତୁମର ଅପମାନ, ତୁମର ଗ୍ଲାନି ! ବର୍ତ୍ତମାନ ଅନୁତାପ କର ମହାରାଜ, ଜୀବନମୟ ପାପରାଶିର କ୍ଷାଳନା ପାଇଁ ।

ଅଶୋକ—(ଭ୍ରୂକ୍ଷେପ ନକରି) ପାପ ? ଅନୁତାପ ? କାହାକୁ ଏସବୁ ଭୟ ଦେଖାଉଛ ? ଜୀବନ ବ୍ୟାପି ଯାହା କରିଛି ତାକୁ ପାପଜ୍ଞାନ

କରିବ କାହିଁକି ? ଲଜ୍ଜା ଅପମାନ ଅନ୍ୟମାନଙ୍କର ଯେପରି ଅଛି ଭାରତ ସମ୍ରାଟ୍‌ର ମଧ୍ୟ ସେହିପରି । କିନ୍ତୁ ଅନ୍ୟମାନଙ୍କ ପରି ସେ ଦୁର୍ବଳ ନୁହେଁ, ସେଥିପାଇଁ ତାହାର ଲଜ୍ଜା ଅପମାନ ଅଧିକ ପରିସ୍ଫୁଟ । କିନ୍ତୁ ଜାଣିରଖ, ନିଜକୁ ସେ ଯେପରି ଲଜ୍ଜା ଦେଇପାରେ, ଗୌରବ ମଧ୍ୟ ଦେଇପାରେ ଅସାମାନ୍ୟ ! ସେ ଗୌରବର ଗୋଟିଏ ଦିଗ ସେ ଦେଖିପାରିଛି, ଅନ୍ୟ ଦିଗଟା ଦେଖିବା ମଧ୍ୟ ତାହାର କ୍ଷମତାର ବାହାରେ ନୁହେଁ । ପୃଥିବୀ ପୃଷ୍ଠରେ ନିଜକୁ ସେ ଏକଚ୍ଛତ୍ର ସମ୍ରାଟ୍ କରି ଦେଖିବାକୁ ଚାହେଁ । ସେଥିପାଇଁ ଅତ୍ୟାଚାର ନିପୀଡ଼ନକୁ ପାପ, ଅନ୍ୟାୟ ଭାବେ ନାହିଁ; ଦୟା ଦାକ୍ଷିଣ୍ୟକୁ ପ୍ରାୟଶ୍ଚିତ୍ତ ଜ୍ଞାନ କରେ ନାହିଁ । ଦୁଇଟାଯାକର ମୂଲ୍ୟ ତାହାଠାରେ ସମାନ । ଜଗତର ସକଳ ବସ୍ତୁକୁ ସେ ବିଚାର କରିବାକୁ ଆସିଛି, ପରୀକ୍ଷା କରିବାକୁ ଆସିଛି । ପାପ କିମ୍ବା ପୁଣ୍ୟ ନିକଟରେ ସେ ପରାଜୟ ମାନେନାହିଁ, ଆତ୍ମ ବିକ୍ରୟ କରେନାହିଁ । କୌଣସି ବସ୍ତୁର ଦାସତ୍ୱ ସ୍ୱୀକାର ତାହା ପକ୍ଷରେ ଅସହ୍ୟ । ଅତ୍ୟାଚାର ନିପୀଡ଼ନ ଉପରେ ଯେପରି, ଦୟା ପୁଣ୍ୟ ଉପରେ ମଧ୍ୟ ସେହିପରି ସେ ରାଜା !

ଚତୁର୍ଥ ପ୍ରେତାତ୍ମା—(ଆଗକୁ ଆସି) ହେଉ ହେଉ, ରାଜାତୁମେ—ସେ କଥା ତୁମକୁ ଭୁଲିବାକୁ କେହି କହୁ ନାହିଁ । କିନ୍ତୁ ମୁଁ କିଏ ଜାଣ ମହାରାଜ ?

ଅଶୋକ—କିଏ ? ମଗଧର ସୈନିକ ! ତୁମେ ମଧ୍ୟ ଏମାନଙ୍କ ସାଥିରେ ?

ଚତୁର୍ଥ ପ୍ରେତାତ୍ମା—ଓହୋ, ଭୁଲି ହୋଇ ଯାଇଚ, ନା ? ଏମାନେ ଆମ ସମ୍ରାଟ୍‌ଙ୍କର ଶତ୍ରୁ ପରା ? ହାଃ ହାଃ ! (ବିଦ୍ରୂପର ହାସ୍ୟ)

ଅଶୋକ—କିନ୍ତୁ ଏ କଣ ? ତୁମେ ଯେ ସ୍ୱଦେଶ ଓ ସ୍ୱଜାତି ପାଇଁ ଜୀବନ ବଳି ଦେଇଛ—ମଗଧର କୀର୍ତ୍ତିନଶାଣ ଯେ ତୁମର ସମାଧି ଉପରେ ଉଡ଼ିବ ।

ଚତୁର୍ଥ ପ୍ରେତାତ୍ମା—(ଉଚ୍ଚ ସ୍ୱରରେ) ହାଃ ହାଃ ! ସ୍ୱଦେଶ ! ସ୍ୱଜାତି ! ଏମାନେ ସବୁ ପରଦେଶର ଲୋକ—ଶତ୍ରୁ ! ମଗଧର ବିଜୟୀ ବୀର ମୁଁ—ଗୃହିଣୀ ମୋର ସହାୟହୀନା ହୋଇ ଲୁହଆଡ଼େ ଅନ୍ଧକାର ଦେଖୁ, ପୁଅ ମୋହର ରାଜଦଣ୍ଡ ପାଇ ଚିରକାଳ ମୂକ ରହୁ, ଯୁଦ୍ଧଭୂଇଁରେ କୀଟ ପରି ଛଟପଟ ହୋଇ ମୁଁ ପଛେ ପ୍ରାଣ ହରାଏଁ, କିନ୍ତୁ ମଗଧର ଜୟପତାକା ମୋହର ପାଇଁ ଉଡ଼ିବ ! କାରଣ ସ୍ୱଦେଶ ! ସ୍ୱଜାତି ! ହାଃ ହାଃ !

ଅଶୋକ—(କ୍ରୋଧ ଓ ଘୃଣାରେ ) ସାମାନ୍ୟ ସୈନିକ, ଏତେ ଆସ୍ପର୍ଦ୍ଧା !

ଚତୁର୍ଥ ପ୍ରେତାତ୍ମା—ସାମାନ୍ୟ ସୈନିକ ନୁହେଁ ମହାରାଜ—ତୁମର ଶକ୍ତି, ତୁମର ସାହସ, ତୁମର ଗର୍ବ, ତୁମର ବିଭୂତି ।

ପ୍ରଥମ ପ୍ରେତାତ୍ମା—(ଅଶୋକଙ୍କୁ କହିବା ପାଇଁ ଉଦ୍ୟତ ଦେଖି ହାତ ଦେଖାଇ) ବାସ୍, ସେତିକ ହେଉ; ଆଉ କହିବା ଦରକାର ନାହିଁ । (କହିବାକୁ ଚେଷ୍ଟା କଲେହେଁ ଅଶୋକଙ୍କ ମୁଖରୁ ବାକ୍ୟ ସ୍ଫୁରଣ ହେଲନାହିଁ; ମାତ୍ର ଚକ୍ଷୁ ବାଷ୍ପାକୁଳ ହୋଇଉଠିଲା ।) କେମିତି ମହାରାଜ—କଥା ନ କହିଲେ କଷ୍ଟ ହୁଏ ବଡ଼, ନା ?

ଦ୍ୱିତୀୟ ପ୍ରେତାତ୍ମା—ହାୟ ଅଶୋକ ।

ତୃତୀୟ ପ୍ରେତାତ୍ମା—ମଗଧ ସମ୍ରାଟ୍ ! ହାଃ ହାଃ !

(ରକ୍ତ ରଶ୍ମି ଟା ଧୀରେ ଧୀରେ ଅଶୋକଙ୍କ ମୁଖରୁ ଅପସରି ଗଲା ଏବଂ ପୂର୍ବ ପରି ଶିବିର ଭିତରେ ଘନ ଅନ୍ଧକାର ମଧ୍ୟରେ ପ୍ରେତାତ୍ମାମାନଙ୍କର ସମସ୍ୱରରେ ତୀବ୍ର ଚିତ୍କାର ଶୁଣାଗଲା—

"ଜୟ ଭାରତ ସମ୍ରାଟ୍‌ଙ୍କର ଜୟ ! ହାଃ ହାଃ ! ହାଃ ହାଃ ହାଃ ! ସେ ସ୍ୱରଟା ଦୂରରୁ ଦୂରକୁ ମିଳାଇ ଗଲା । ପୁନର୍ବାର ଯେତେବେଳେ ଶିବିରରେ ଆଲୋକ ଜଳିଲା, ପ୍ରେତଗୁଡ଼ିକ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି ଏବଂ ଅଶୋକ ଓ ଅଦୂରରେ ସେହି ରକ୍ଷୀ ଦୁଇ ଜଣ ପୂର୍ବ ପରି ନିଦ୍ରିତ ।)

ଦ୍ୱିତୀୟ ରକ୍ଷୀ—(ଉଠି ବସି ଆଖି ମଳିଲା ଏବଂ ଅଶୋକଙ୍କୁ ଚାହିଁ ବ୍ୟସ୍ତବସ୍ତ ଭାବରେ ତାହାର ସଙ୍ଗୀକୁ ଉଠାଇବାକୁ ଗଲା ।) ଉଠ୍‌ରେ ହେ ! ତୋହର କଣ ନିଦ ଭାଙ୍ଗିବ ନାହିଁ ?

ପ୍ରଥମ ରକ୍ଷୀ—(ପୂର୍ବ ପରି ନିଶ୍ଚଳ ଭାବରେ ପଡ଼ିରହି ଆଖି ଫିଟାଇଲା ଏବଂ ଅଶୋକଙ୍କର ସ୍ୱର ଅନୁକରଣ କରି ) ଯାଅ— କଳିଙ୍ଗର ଘରେ ଘରେ ନିଆଁ ଜାଳିଦିଅ ।

ଦ୍ୱିତୀୟ ରକ୍ଷୀ—ବାଃ ଏହିକ୍ଷଣି ତେବେ ମଗଧ ସମ୍ରାଟ୍‌ଙ୍କ ଅବତାର ପରି ? ହେଉ, ହେଉ, ବହୁତ ହେଲାଣି—ଏଥର ତେବେ ପହଡ଼ ଭାଙ୍ଗୁ !

ଅଶୋକ—(ଆଖି ଫିଟାଇ ଡାକିଲେ ) କିଏ ଅଛୁରେ !

ଦ୍ୱିତୀୟ ରକ୍ଷୀ—(ଚମକି ପଡ଼ି ଗୃହଆଡ଼କୁ ଚାହିଁଲା ଏବଂ ପରେ ଭୁନି ଭୁନି ) ଯା ଏଥର, ସମ୍ଭାଳେ—ମହାରାଜା ଡାକିଲେଣି ।

ପ୍ରଥମ ରକ୍ଷୀ— (ଧଡ଼ପଡ଼ ଉଠି କମ୍ପିତ ଦେହରେ) ଏଁ ?ମହାରାଜ ? ଆଉ ମୁଁ ?ମୁଁ ତେବେ କେଉଁଠାରେ ? (ଦ୍ରୁତପଦରେ ପଳାୟନ)

ଦ୍ୱିତୀୟ ରକ୍ଷୀ—(ଅଶୋକଙ୍କ ପାଖକୁ ଯାଇ ଓ ଅଭିବାଦନ କରି ) ମହାରାଜ !

ଅଶୋକ—ରାତି ଆଉ କେତେ ବାକି ?

ଦ୍ୱିତୀୟ ରକ୍ଷୀ —ପୂର୍ବ ଆକାଶରେ କୁଆଁ ତାରା ଉଇଁଲାଣି । ବରୁଣାଇ ପାହାଡ଼ ଉପରେ ଚନ୍ଦ୍ରର ଶେଷରେଖାଟି ଦେଖାଯାଉଛି ।

ଅଶୋକ—ତୁମେମାନେ ଏଠାରେ ସମସ୍ତ ରାତି ଜଗିରହିଥିଲ ତ ?

ଦ୍ୱିତୀୟ ରକ୍ଷୀ—(ଚୌର ଦୃଷ୍ଟିରେ ଚତୁର୍ଦ୍ଦିଗକୁ ଚାହିଁ) ଆଜ୍ଞା ମଣିମା ! କାହିଁ ଯାଇ ନାହୁଁ ।

ଅଶୋକ—ମୋ ପ୍ରଶ୍ନର ଉତ୍ତର ଦେ—ସମସ୍ତ ରାତି ଜଗିଥିଲ ?

ଦ୍ୱିତୀୟ ରକ୍ଷୀ—(କାତର ହୋଇ) ଆଜ୍ଞା ମଣିମା—ସମସ୍ତ ରାତି !

ଅଶୋକ—କେତେ ଜଣ ?

ଦ୍ୱିତୀୟ ରକ୍ଷୀ—ଦୁଇଜଣ ।

ଅଶୋକ—ରାତି ଭିତରେ ଶିବିରକୁ କେହି ଆସି ନାହିଁ ?

ଦ୍ୱିତୀୟ ରକ୍ଷୀ—(କମ୍ପିତ କଣ୍ଠରେ) ନାହିଁ ମହାରାଜ !

ଅଶୋକ—ସତ କହୁଚୁ ?

ଦ୍ୱିତୀୟ ରକ୍ଷୀ—ଦୁଇଜଣ ପାଳକରି ଜଗିଚୁ ମହାରାଜ ! ମଝିରେ ଖାଲି ଦଣ୍ଡେ ଲେଖାଏଁ ଶୋଇପଡ଼ିଥିଲୁ ।

ଅଶୋକ—ଶୋଇବା ଭିତରେ କେହି ଆସି ନାହିଁ ?

ଦ୍ୱିତୀୟ ରକ୍ଷୀ—ମୋର ଶୋଇବା ଭିତରେ କେହି ତ ଆସିନାହିଁ—, କିନ୍ତୁ ତାହାର ଶୋଇଥିବା ଭିତରେ ଯଦି କେହି ଆସିଥାଏ —ସେକଥା ମୁଁ କେବେ କିପରି କହିପାରିବି, ମଣିମା !

ଅଶୋକ—ମୂର୍ଖ ! ତାହାର ଶୋଇଥିବା ବେଳେ ତୁ କେବେ ଚାହିଁ ନ ଥିଲୁ ?

ରାଧାଗୁପ୍ତ—(ପ୍ରବେଶ ଓ ଅଭିବାଦନ କରି) ସିଂହଳ ଅଭିଯାନ ପାଇଁ ସବୁ ଆୟୋଜନ ସ୍ଥିର ହୋଇଛି ମହାରାଜ ! (ରକ୍ଷୀର ପ୍ରସ୍ଥାନ) ।

ଅଶୋକ—ସବୁ ସ୍ଥିର କରି ଆସିଛ ? କିନ୍ତୁ ମଗଧ ସମ୍ରାଟ୍‌ର ସଂକଳ୍ପ ଯେ ବର୍ତ୍ତମାନ ଅସ୍ଥିର ! (ଅବାକ୍ ଦୃଷ୍ଟିରେ ରାଧାଗୁପ୍ତ ତାଙ୍କର ମୁଖକୁ ଚାହିଁଲେ) ହଁ ରାଧାଗୁପ୍ତ, ସିଂହଳ ଅଭିଯାନ ବର୍ତ୍ତମାନ ସ୍ଥଗିତ ରଖିବାକୁ ହେବ ।

ରାଧାଗୁପ୍ତ—(ଆକାଶରୁ ପଡ଼ି) ସ୍ଥିର ହେବ ?

ଅଶୋକ—କଳିଙ୍ଗରୁ ଯେତେ ଧନ ଲୁଟି ହୋଇ ଆସିଛି, ଆମର ସୈନ୍ୟମାନେ ଆଜ ଏ ଦେଶର ଘରେ ଘେର ବୁଲି ତାହା ଫେରାଇ ଦେଇ ଆସିବେ ।

ରାଧାଗୁପ୍ତ—(ସନ୍ଦେହ ଓ ବିସ୍ମୟରେ) ମହାରାଜ !

ଅଶୋକ—ଆମର ମଧ୍ୟ ଯେତେ ଧନ ବଳକା ଅଛି, ସବୁ ଏହିଠାରେ ବାଣ୍ଟିବାକୁ ହେବ । ସୈନ୍ୟମାନଙ୍କୁ ଆଦେଶ ଦିଅ, ମଗଧର ଆହତମାନଙ୍କ ସଙ୍ଗେ କଳିଙ୍ଗର ଆହତମାନଙ୍କୁ ମଧ୍ୟ ସମାନ ଶୁଶ୍ରୂଷା କରିବେ—ଆଜ ଏ ରାଜ୍ୟର ସବୁ ବନ୍ଦୀଙ୍କୁ ଏହିକ୍ଷଣି ଯାଇ ମୁକୁଳାଇଦିଅ ।

ରାଧାଗୁପ୍ତ —କିନ୍ତୁ ମହାରାଜ !

ଅଶୋକ—ଭାରତ ସମ୍ରାଟ୍‌ର କଥା ଯାହା କାମ ତାହା । ସେ କେବଳ ପ୍ରଶ୍ନ କରିବାକୁ ଜାଣେ, କାହାରିଠାରୁ ପ୍ରଶ୍ନ ଶୁଣିବା ତାହାର ଅଭ୍ୟାସରେ ନାହିଁ ଏହା କଣ ଆଜ ଯାଏ ବୁଝି ନାହଁ ? (ମୃଦୁ ହସି) ସିଂହଳ ଅଭିଯାନ ପାଇଁ ବଡ଼ ବେଶି ଆୟୋଜନ କରିଚ, ନା ? ସେଥିପାଇଁ ତୁମେ ଅବଶ୍ୟ ପୁରସ୍କୃତ ହେବ ।

ରାଧାଗୁପ୍ତ—ସିଂହଳ ଅଭିଯାନ ପାଇଁ ଆମର ସୈନ୍ୟସାମନ୍ତମାନେ ମହା ଆହ୍ଲାଦରେ ଯାତ୍ରା ଆରମ୍ଭ କରିଅଛନ୍ତି ।

ଅଶୋକ—ସେମାନଙ୍କୁ ଫେରାଇଆଣ ଏବଂ ଜଣାଇଦିଅ ଯେ କଳିଙ୍ଗଯୁଦ୍ଧ ଏ ରାଜତ୍ୱର ଶେଷ ଯୁଦ୍ଧ । ଦୁଃଖ କର ନାହିଁ ରାଧାଗୁପ୍ତ ! ଚୀନ, ସିଂହଳକୁ ଅବଶ୍ୟ କରଗତ କରିବାକୁ ହେବ, କିନ୍ତୁ ତାହା ପ୍ରଜାର ରକ୍ତପାତରେ ନୁହେଁ, ଭାରତ ସମ୍ରାଟ୍‌ର ଅଶ୍ରୁପାତରେ । ମନୁଷ୍ୟର ହସିବା ଅନୁପାତରେ କାନ୍ଦିବା ମଧ୍ୟ ଅନେକ ସମୟରେ ଦରକାର । ଭାରତ ସମ୍ରାଟ୍

ପକ୍ଷରେ ଏହି କାନ୍ଦିବାର ବେଳ ଆସିଛି । ନିଜକୁ ହସାଇବା ପାଇଁ କୋଟି କୋଟି ଲୋକଙ୍କୁ କନ୍ଦାଇବା ଦିନେ ତାହାର ଆବଶ୍ୟକ ଥିଲା; ଆଜି କିନ୍ତୁ ନିଜେ କାନ୍ଦି କୋଟି କୋଟି ଲୋକଙ୍କୁ ହସାଇବାକୁ ସେ ଚାହେଁ । ଏ କାନ୍ଦଣା ତାହାର ଅନୁତାପ ନୁହେଁ ରାଧାଗୁପ୍ତ, ଅନୁପାତ—ହସିବା ସଙ୍ଗେ କାନ୍ଦିବାର ଅନୁତାପ ରଖିବାକୁ ସେ ଚାହେଁ । ମୃତ୍ୟୁଟା ଯେପରି, ଜୀବନଟା ମଧ୍ୟ ସେହିପରି ଯେ ପ୍ରୟୋଜନ, ବୁଝି ପାରୁଚ ?

ରାଧାଗୁପ୍ତ—ମହାରାଜ, ଏବେ ମଧ୍ୟ ଆମର କେତେକ ସେନା ମହା ଉତ୍ସାହରେ କଳିଙ୍ଗର ଧନରତ୍ନ ଲୁଣ୍ଠନ କରିବାରେ ବ୍ୟସ୍ତ ଅଛନ୍ତି ।

ଅଶୋକ—(ଉଦ୍‌ବେଗ ସହ) ସେମାନଙ୍କୁ ତୁରନ୍ତ ସମ୍ବାଦ ଦିଅ, ସେ ଉତ୍ସାହକୁ କଳିଙ୍ଗବାସୀର ସେବାରେ ନିଯୁକ୍ତ କରିବେ । ଆଜି ଏ ଆଦେଶକୁ ଅମାନ୍ୟ କଲେ କଠୋର ଦଣ୍ଡରେ ଦଣ୍ଡିତ ହେବେ । ଯାଅ ରାଧାଗୁପ୍ତ—ବିଳମ୍ବ କରନାହିଁ ।

ରାଧାଗୁପ୍ତ—ଆଜି ମଧ୍ୟ କେତେକ ସୈନ୍ୟ ଦନ୍ତପୁର, ଖଣ୍ଡଗିରି ଓ ଏହି ଧଉଳି ପ୍ରଭୃତି କଳିଙ୍ଗର ବିଶିଷ୍ଟ ସ୍ଥାନମାନଙ୍କରେ ସାମ୍ରାଜ୍ୟର କୀର୍ତ୍ତି ପତାକା ଉତ୍ତୋଳନ କରି ବିଜୟ ଉତ୍ସବରେ ମତ୍ତ ଅଛନ୍ତି ।

ଅଶୋକ—(ପୂର୍ବ ପରି) ନା, ନା ରାଧାଗୁପ୍ତ ! ସଙ୍ଗେ ସଙ୍ଗେ ସେ ସବୁ ଉଠାଇ ଆଣ । ଆଜି ଏହି ପାହାଡ଼ଗୁଡ଼ିକର ପଥର ଦେହରେ ଲେଖିଦିଅ—କଳିଙ୍ଗ ସମରରେ ଆହତମାନଙ୍କ ରକ୍ତ ଭାରତସମ୍ରାଟ୍‌ର ହୃଦୟରୁ ଅହରହ ଝରୁଛି ଓ ନିହତମାନଙ୍କ ଯନ୍ତ୍ରଣା ତାହାର ମରଣକୁ ବଳି ବ୍ୟାପିଯାଇଛି । ଯେଉଁ ନାରୀ ସନ୍ତାନ ହରାଇଅଛି, ତାହାର ହାନି ମଗଧରାଜାର ହାନିଠାରୁ ବେଶି ନୁହେଁ ଏବଂ ଯେଉଁମାନେ ବିଧବା ହୋଇଅଛନ୍ତି, ଅଶୋକର ବୈଧବ୍ୟ ସେମାନଙ୍କଠାରୁ ବହୁଗୁଣରେ ବିକଳ ।

(ପ୍ରଥମେ କୁନାଳ ଏବଂ ପରେ ସଂଘମିତ୍ରା ଓ ମାଧାରିକା ଗୀତ ଗାଇ ଗାଇ ପ୍ରବେଶ କଲେ । ସମସ୍ତଙ୍କ ଦେହରେ ଗେରୁଆ ପରିଧାନ । ଗୀତଟିର କେବଳ ଘୋଷା ପଦକୁ ସଂଘମିତ୍ରା ଓ ମାଧାରିକା ଆବୃତ୍ତି କଲେ ।)

ମରଣେ ମୋହର ଅମୃତରସ ଢାଳ,
ବଧୂର ହୃଦୟରେ ଖରତ୍ର ଦହନ ଜାଳ;
ବେଦନାର ଛଳେ ମଧୁର ପରଶ ଦିଅ,
ହେ ମୋର ପ୍ରିୟ, ହେ ପ୍ରିୟ !
ବିଶ୍ୱର ଶତ ଲାଞ୍ଛନା ମୋତେ
କରିଯାଏ ଉପହାସ,
ଅହରହ ଏହି ପରାଣେ ଲେଖଇ
ଅଶ୍ରୁ ସଜଳ ତ୍ରାସ ।
ଧରାର ଆଘାତେ
ବିକଳ ବିରୂପ ପ୍ରାଣ
ଢାଳଇ ନିଗାଡ଼ି
ଶିର ଗଇରିକ ଗାନ
କୁସୁମ ସମାନ
ବ୍ୟଥା ଫୁଟେ କମନୀୟ !
ହେ ମୋର ପ୍ରିୟ, ହେ ପ୍ରିୟ ?

ଅଶୋକ—(ଆସନ ଛାଡ଼ି) କୁନାଳ !

କୁନାଳ—ମହାରାଜ !

ଅଶୋକ—( ସଂଘମିତ୍ରା ଓ ମାଧାରିକାଙ୍କୁ ଲକ୍ଷ୍ୟ କରି ) ଏମାନଙ୍କ ଦେହରେ ମଧ୍ୟ ଗେରୁଆ କାହିଁକି ?

ସଂଘମିତ୍ରା—(ମୃଦୁ ହସି), ନମ୍ରସ୍ୱରରେ ନିଜର କାନକୁ ଦେଖାଇ) ମହାରାଜ, ସମଗ୍ର ମାନବଜାତିର ଏହା ରୁଧିର ଚିହ୍ନ ।

କୁନାଳ—ସିଂହଳ ସମରରେ ସେ ଚିହ୍ନକୁ ନିଭାଇବାପାଇଁ ଯାଉଛୁଁ ମହାରାଜ ! ସେଥିପାଇଁ ପ୍ରଥମେ ଅନୁମତି ଭିକ୍ଷା କରିବାକୁ ଆସିଅଛୁଁ ।

ରାଧାଗୁପ୍ତ ରାଜକୁମାର ! ସିଂହଳ ଯୁଦ୍ଧ ସ୍ଥଗିତ ହୋଇଅଛି ।

ଅଶୋକ—କିନ୍ତୁ ତୁମ୍ଭମାନଙ୍କୁ ସେଠାକୁ ଯିବାକୁ ହେବ । କୁନାଳ, ସଂଘମିତ୍ରା ! କଳିଙ୍ଗରେ ମୁଁ ଯେଉଁ ହିଂସାରେ ପରାସ୍ତ ହୋଇଅଛି, ସିଂହଳରେ ସେହି ହିଂସାରେ ଜୟ କରିବାକୁ ଚାହେଁ । ସେଥିପାଇଁ ତୁମେ ଦୁହେଁ ମୋହର ପ୍ରଧାନ ସହାୟ । ରାଧାଗୁପ୍ତ ! ଏମାନଙ୍କର ଯାତ୍ରାର ଆୟୋଜନ କର । ସିଂହଳ ଅଭିଯାନରେ ଏହିମାନେ ହିଁ ମୋହର ଅଗ୍ରଦୂତ ।

ରାଧାଗୁପ୍ତ—ମାହାରିକା ମଧ୍ୟ ଏ ଅଭିଯାନରେ ଯୋଗ ଦେଇ ଅଛନ୍ତି ।

ମାହାରିକା—( ଚପଳ ହାସ୍ୟରେ ) ମାହାରିକା ଯେ ଜେମାଙ୍କର ସହଚରୀ !

ଅଶୋକ—(ସଂଘମିତ୍ରାଙ୍କ ପ୍ରତି) ଯାଅ ମା, ସିଂହଳ ଯାତ୍ରା ପାଇଁ ପ୍ରସ୍ତୁତ ହୁଅ ? (କୁନାଳ, ସଂଘମିତ୍ରା ଓ ମାହାରିକା ଅଭିବାଦନ କରି ପ୍ରସ୍ଥାନ) ରାଧାଗୁପ୍ତ ? କାଲି ଗୋଟାଏ ବିଚିତ୍ର ସ୍ୱପ୍ନ ଦେଖିଲି ...କିନ୍ତୁ ଗଣିଭିକ୍ଷୁ କାହାନ୍ତି ? ଏତେବେଳଯାଏ ତାଙ୍କର ସକାଳବୁଲା ସରିନାହିଁ ? (ଅଶୋକ ଓ ରାଧାଗୁପ୍ତ ଆସନରେ ବସିଲେ । )

ରାଧାଗୁପ୍ତ—ଅନ୍ୟ ଦିନେ ତ ବହୁତ ଆଗରୁ ସେ ଫେରିଆସିଥାନ୍ତି ।

ଅଶୋକ—ସିଂହଳ ଅଭିଯାନ ସ୍ଥଗିତ ହେବା ଖବର ତ ଶୁଣି ନାହାନ୍ତି ସେ, ତେବେ ଏତେ ଡେରି କାହିଁକି ତାଙ୍କର ?

ରାଧାଗୁପ୍ତ—(ମୃଦୁ ହସି) ମହାରାଜ ? ବାପୁ ସେବକାର୍ହି ଯାହାଙ୍କର ପ୍ରଧାନ ଦାୟିତ୍ୱ ତାଙ୍କ ପକ୍ଷରେ ଆଜି ଦେରି ଚଞ୍ଚଳ କଣ ?

ଦାସ—( ପ୍ରବେଶ ଓ ଜାନୁପାତ କରି ) ଗଣଭଦ୍ର ଶ୍ରୀଗ୍ରୁମୁଙ୍କୁ ଆସୁଛନ୍ତି ।

ରାଧାଗୁପ୍ତ—(ପରିହାସଯୁକ୍ତ ସ୍ୱରରେ ) ତେବେ ତ ତାଙ୍କର ବହୁତ ପରମାୟୁ ?

(ଦୁଇ ଚାରିଜଣ ସୈନିକ ଆହତମାନଙ୍କ ଖଟିଆରେ ଗଣଭଦ୍ରଙ୍କୁ ଶୋଇବା ଅବସ୍ଥାରେ ଆଣିଲେ । ତାଙ୍କର ବକ୍ଷ ଉପରେ ଗୋଟାଏ ଶର ଲାଗିଅଛି ଏବଂ ସମସ୍ତ ଦେହ ଓ ପରିଧେୟ ରକ୍ତାକ୍ତ । )

ଗଣଭଦ୍ର—(ସେହିପରି ଶୋଇଥିବା ଅବସ୍ଥାରେ ରାଧାଗୁପ୍ତଙ୍କର ମନ୍ତବ୍ୟ ଶୁଣି) ଯଥେଷ୍ଟ ପରମାୟୁ···ଆଉ ପ୍ରାୟ ଦଶ ଦଣ୍ଡ । (ଅଶୋକ ଓ ରାଧାଗୁପ୍ତ ବିସ୍ମିତ ହୋଇ ଖଟିଆ ପାଖକୁ ଉଠି ଆସିଲେ ।)

ଅଶୋକ—ଏ କ’ଣ ଗଣଭଦ୍ର ? ଏପରି ଭାବରେ ?

ଗଣଭଦ୍ର—(କୁଣ୍ଠିତ କଣ୍ଠରେ ) କାଲି ପରା ମହାରାଜଙ୍କଠାରେ ପ୍ରତିଶ୍ରୁତି ଦେଇଥିଲି ଆଜି ସକାଳେ ସାକ୍ଷାତ୍ କରିବି ବୋଲି ! ଏ ଅବସ୍ଥାଟା ଶୀଘ୍ର ବଦଳିଯିବ ବୋଲି ଆଶା ନ ଥିବାରୁ ଏହିପରି ଭାବରେ ଆସିବାକୁ ହେଲା । ବାଟରେ ଆସୁ ଆସୁ ଜେମା ଏବଂ ମହାସ୍ଥବିରାଙ୍କଠାରୁ ଶୁଣିଲି, ସିଂହଳ ବିଜୟ ପାଇଁ ଦଳେ ନୂଆ ଧରଣର ସୈନିକ ଯାତ୍ରା କରୁଛନ୍ତି । ବେଶ୍ ଆରାମ ଲାଗିଲା—କିନ୍ତୁ ବିସ୍ମୟ ଲାଗି ନାହିଁ, କାରଣ କୌଣସି ରକମର ଜୟ ତ ଭାରତ ସମ୍ରାଟ୍‌ଙ୍କ ଆୟତ୍ତର ବାହାରେ ନୁହେଁ !

ଅଶୋକ—(ଦୁଃଖ ଓ ବିସ୍ମୟରେ) କିନ୍ତୁ ଏ କଣ ? ଛାତିରେ ତୁମର ଶର ଲଗିଲା କିପରି ?

ଗଣଭଟ୍ଟ—(ପୂର୍ବପରି) କାରଣ, ଆଜି ମଧ୍ୟ ଅତି ସକାଳୁ ମୁଁ ଦୟା ନଈର ଆର ପାଖ ଆମ୍ବତୋଟାକୁ ବୁଲି ଯାଇଥିଲି । ମହା-ରାଜାଙ୍କର ଆଦେଶ ଅମାନ୍ୟ କରିଥିବାର ଫଳ ଏହା ।

ରାଧାଗୁପ୍ତ—(ବିସ୍ମିତ ହୋଇ) କଳିଙ୍ଗରେ ଏବେ ମଧ୍ୟ କଣ ସୈନ୍ୟ ଅଛନ୍ତି ମଗଧ ଲୋକଙ୍କୁ ମାରିବା ପାଇଁ ?

ଗଣଭଟ୍ଟ—ଏ କାମଟା କଳିଙ୍ଗ ସୈନ୍ୟର ନୁହେଁ, ମଗଧ ସୈନ୍ୟର ।

ଅଶୋକ—( ବିଚଳିତ ଭାବରେ ) ମଗଧର ? ରାଧାଗୁପ୍ତ ! ସେ ଲୋକର ଏହି ମୁହୂର୍ତ୍ତରେହିଁ ପ୍ରାଣଦଣ୍ଡ ହେବା ଉଚିତ ?

ଗଣଭଟ୍ଟ—ମହାରାଜ ! ସେ ବିଚରାର କିଛି ଦୋଷ ନାହିଁ, ଦୋଷ ମୋହରି । କାରଣ ମୁଁ ତାହାକୁ ମଣିଷ ପରି ଦେଖା ନ ଯାଇ ଗୋଟିଏ ଜନ୍ତୁ ପରି ଦେଖାଗଲି । କାଲି କଳିଙ୍ଗ ସମରରେ ଜିତି ଆଜି ତାହାର ମଗଜ ବଡ଼ ଖୁସି ଅଛି । ସେଥିପାଇଁ ସକାଳୁ ଉଠି ଭାଲୁ ଶିକାରରେ ବାହାରିଥିଲା । କିନ୍ତୁ ଭୋର ଅନ୍ଧାରରେ ଚିହ୍ନି ନପାରି ସାମାନ୍ୟ ଟିକିଏ ଭୁଲ କରି ପକାଇଛି—ମଣିଷକୁ ଭାଲୁ ମନେକରି ।

ରାଧାଗୁପ୍ତ—କିନ୍ତୁ ଏପରି ଭୁଲପାଇଁ ମଧ୍ୟ ସେ ଦୋଷୀ । କିଏ ସେ ଲୋକ ?

ଗଣଭଟ୍ଟ—ନାହିଁ ରାଧାଗୁପ୍ତ, ସେ ଖୁସିରେ ମାରିଛି, ରାଗରେ ନୁହେଁ—ସେଥିପାଇଁ କ୍ଷମାର ପାତ୍ର । ଆଜି ସକାଳେ ଯେମିତି କୁହୁଡ଼ି, ସେଥିରେ ତ ଏତେ ଦୂରରୁ ଯେ କାହାର ସନ୍ଦେହ ହେବାର କଥା ! ବିନା କୁହୁଡ଼ିରେ ମଧ୍ୟ ମୁଁ ନିଜେ ତ ନିଜକୁ ମଣିଷ କି ଭାଲୁ ଆଜିଯାଏ ଠିକ୍ କରି ପାରିଲି ନାହିଁ ।

ଅଶୋକ—(ରାଧାଗୁପ୍ତଙ୍କୁ ଚାହିଁ) ଶରଟା କଣ କାଢ଼ିବାର ଉପାୟ ନାହିଁ ?

ଗଣଭଦ୍ର—ଶରଟା କାଢ଼ିଦେଲେ ମହାରାଜାଙ୍କ ସଙ୍ଗେ ସାକ୍ଷାତ୍ ବୋଧହୁଏ ଆହୁରି ସଂକ୍ଷିପ୍ତ ହୋଇଯିବ—ନା ରାଧାଗୁପ୍ତ ?

ରାଧାଗୁପ୍ତ—(ପରୀକ୍ଷା କରି, ଧୀର ସ୍ୱରରେ)ନାହିଁ ମହାରାଜା ? ଏକା ବେଳେ କଲିଜା ଭିତରେ ଲାଗିଛି ।

ଗଣଭଦ୍ର—(ମୃଦୁ ହସି, କଷ୍ଟରେ) ଭଲକରି ପରୀକ୍ଷା କଲ—କଲିଜା ସବୁ ଲୋକଙ୍କର ଥାଏ ତ ?

ରାଧାଗୁପ୍ତ—(ଗଣଭଦ୍ରଙ୍କ କ୍ଷତକୁ ଚାହିଁ ବ୍ୟସ୍ତ ସ୍ୱରରେ) ମହାରାଜ, ରକ୍ତର ପରିମାଣ ବର୍ତ୍ତମାନ ଖୁବ୍ ବେଶି ।

ଗଣଭଦ୍ର—(ପୂର୍ବପରି) ମୋହର କିନ୍ତୁ ଆନନ୍ଦ ହେଉଛି ରାଧାଗୁପ୍ତ, ନିଜ ଦେହରେ ଏତେ ରକ୍ତ ଥିବାର ଆଗରୁ ତ କାହିଁ ଜାଣି ନ ଥିଲି ! ଏଥିପାଇଁ ବୋଧହୁଏ ଯୋଦ୍ଧାମାନେ ଯୁଦ୍ଧକ୍ଷେତ୍ରେ ମରିବାକୁ ଚାହାନ୍ତି—ନ ହେଲେ ଏତେ ସହଜରେ ନିଜର ରକ୍ତର ଓଜନଟା ଜଣାଯିବ ଆଉ କିପରି ?

ଅଶୋକ—(ଗଣଭଦ୍ରଙ୍କ ସ୍କନ୍ଧରେ ହାତ ରଖି ସ୍ନେହସିକ୍ତ ଦୃଷ୍ଟିରେ) ଗଣଭଦ୍ର ! ପ୍ରିୟ ବୟସ୍ୟ ମୋର ?

ଗଣଭଦ୍ର—( ମୃଦୁ ହସି କ୍ଷୀଣତର ସ୍ୱରରେ ) ଆଜଯାଏ ଖାଲି କଥା ଗପିଲି ମହାରାଜ ! ଧନୁଶର ଧରି ନ ଜାଣିବାର ଯେଉଁ ଅପବାଦ କରିଛ, ତାହାର ପ୍ରତିଶୋଧ ଏ ? ଜଗତର ସବୁ ଗପୁଡ଼ିଙ୍କ ପାଇଁ ଏହି ପୁରସ୍କାର ହିଁ ଯୋଗ୍ୟ । (ଅଶୋକ ଓ ରାଧାଗୁପ୍ତଙ୍କର ଯୁଗପତ୍ ବ୍ୟସ୍ତ ଓ ବ୍ୟଥିତଭାବ)

(ଯବନିକା)